# ସ୍ମାର୍ଟ୍

# ବା

# ବିସ୍ଫୋରକ ମହାଭାରତ୍

ସମସ୍ତ ବିସ୍ଫୋରଣ *ତଥା*

ଅନେକ  ବିଶେଷକଥନ ସହ

-   ଲଲାଟେନ୍ଦୁ କବି

=======

**ମଙ୍ଗଳାଚରଣମ୍:**

ମୋ ସ୍ମାଟ୍ ମହାସମର ଗଳ୍ପର ସର୍ବ ଅଂଶେ

ନାନା ଜନଙ୍କ କଳନା ବୁଝ ରାଜବଂଶେ ।

ବୀରଙ୍କ ଭାବନର ସଂଶୟ ଦେଖ ସାରା

କେମନ୍ତ ଯୋଦ୍ଧୃକୁଳଚିତ୍ତର ଭାବଧାରା ॥00॥

=======

ସ୍ମାର୍ଟ୍ ମହାଭାରତ୍ — ୧/ପ୍ରଥମ ବିସ୍ଫୋରଣ

### କୃଷ୍ଣାର୍ଜୁନ (କ)

ପାର୍ଥ ହସ୍ତ ଧରି ଶକ୍ତ    କହନ୍ତି ଅଚ୍ୟୁତ,
ମୋର ଶରଣରେ ତୋର    ଚିତ୍ତ ହେଉ ପୁତ ।    ୧
ଅର୍ଜୁନ କହନ୍ତି ପଡି    ପ୍ରଭୁ ପଦ ତଳେ,
କର ପଥ ପରିଷ୍କୃତ    କୂଟ କଉଶଳେ !    ୨
କାନରେ କହନ୍ତି କୃଷ୍ଣ    କୁନ୍ତୀସୁତ ଶୁଣ,
କ୍ଷାତ୍ରଧର୍ମ ସାରମର୍ମ    କହିବି ନିଖୁଣ ।    ୩
ବଇରୀକି ଭାବିବନି    କେବେ ବଳହୀନ,
ମଉକା ଦେଖିଣ ତାକୁ    କରିବ ନିଶ୍ଚିହ୍ନ ।    ୪
ହେଉ ପିତାମହ, ହେଉ    ଅଧିରଥସୁତ,
ନିରସ୍ତ୍ର ପାଇଲେ ମସ୍ତ    କର ସ୍କନ୍ଧଚ୍ୟୁତ ।    ୫
ଶୋକାର୍ତ୍ତ ଦ୍ରୋଣ ଦର୍ଶନେ    ଗୁରୁଜ୍ଞାନ କରି,
ବିଦୀର୍ଣ୍ଣ କରିବ ହୃଦ    ବୀରତ୍ୱ ଆଚରି ।    ୬
ମାନୁଥିବ କଥା ମୋର,    ମନ ଥିବ ଚେଙ୍ଗା,
ନ ମାନିଲେ ଭାଗ୍ୟ ତୋର    କରିଦେବି ବେଙ୍ଗା!    ୭

*ଲଲାଟେନ୍ଦୁ କବି*

ସ୍ମାର୍ଟ୍ ମହାଭାରତ୍ — ୨/ଦ୍ୱିତୀୟ ବିସ୍ଫୋରଣ

### ଦୁର୍ଯ୍ୟୋଧନ ଗାନ୍ଧାରୀ

ଦୁର୍ଯ୍ୟୋଧନ ଦୁଃଖ ମନ    କହଇ ପାଣ୍ଡବ
ନ ସରୁଁ ଅଜ୍ଞାତବାସ    କଲେଣି  ତାଣ୍ଡବ ।    ୮
ଶେଷ ବର୍ଷ ମଳମାସ    ମିଶି ତେର ମାସ,
ବାରମାସେ ଆସିଗଲେ,    ଏଡ଼େ ବଦମାସ ।    ୯
ଭୀଷ୍ମ କଲେ ସମର୍ଥନ,    କି ଅଦ୍ଭୁତ ଲୀଳା,
ସେ ସକାଶେ ପଶିଗଲା    ମସ୍ତବଡ କୀଳା ।    ୧୦
ଦିଅ ମା ଆଶିଷ ଆସେ    ପାଣ୍ଡବେ ସଂହାରି,
ସ୍କନ୍ଧରୁ ମସ୍ତକ ତାଙ୍କ    ସହସା ଉତ୍ତାରି ।    ୧୧
ଗାନ୍ଧାରୀ ଗର୍ଜିଲେ କରି    ସାହସ ସଞ୍ଚୟ,
ପୁଣ୍ୟର ବିଜୟ ହେଉ,    ପାପର ବିଲୟ ।    ୧୨
ଧୃତରାଷ୍ଟ୍ରପୁତ୍ର କହେ    ପ୍ରସ୍ତର ଜନନୀ,
ୟାଠାରୁ ବିଜୟବର    ମିଳି ପାରିବନି ।    ୧୩
ଟିକେ କଲେ ଗଜଗଜ    ରହୁଅଛି ତୁନି,
ମାତାଠୁ ଉତ୍ତମ ଅତି    ମାତୁଳ ଶକୁନି ।    ୧୪

ଲଲାଟେନ୍ଦୁ କବି

ସ୍ମାର୍ଟ୍ ମହାଭାରତ୍ — ୩/ତୃତିୟ ବିସ୍ଫୋରଣ

### ପାଣ୍ଡବଙ୍କୁ କୁନ୍ତୀଙ୍କ ଆଜ୍ଞା

ପାଞ୍ଚଭାଇ କନ୍ୟା ନେଇ    ଲେଉଟି କୁଟୀରେ,
କୁନ୍ତୀଙ୍କି କହନ୍ତି କିଛି    ନାହିଁ ମା ମୁଠିରେ ।    ୧୫
ବୁଝାଇ କହନ୍ତି ମା ଗୋ    ନ ମିଳୁ ତଣ୍ଡୁଳ,
ଆଜି ଯା' ମିଳିଛି ଭିକ୍ଷା    ଜଗତେ ଅତୁଳ ।    ୧୬
କହ ମାତା କେଉଁ ଭାବେ    ନିୟୋଜିବୁ ତାକୁ,
ଅପେକ୍ଷା କରିଛୁ ତୁମ    ଆଜ୍ଞା ପାଳିବାକୁ ।    ୧୭
'ଲୋଡେନା ମୁଁ' କହେ ମାତା  ଔଦାର୍ଯ୍ୟ ଅାଚରି -
'ଯା ଅଛି ଭୋଗ ତନୟେ    ସମଭାଗ କରି' ।    ୧୮
ପୁତ୍ର ବିଚାରିଲେ ମାନି    ମାତାଙ୍କ ବଚନ,
ସର୍ବେ ତା ସହିତ କରି    ନେବେ ଉଦ୍ବାହନ ।    ୧୯

ପାଞ୍ଚାଳୀ ସାଜିବ ପାଞ୍ଚ    ଭାଇଙ୍କ ଭାରିଯା,
ଅନ୍ଧ ସାଜି ଜନନୀର    ବଚନ ମାନି ଯା ।    ୨୦
ଦ୍ରୌପଦୀ ଭାଳୁଛି ଏତ    ଅଦଭୁତ ଶାଶୂ !
କଲାଣି ନିର୍ବୋଧ ଆଜ୍ଞା    ନୂଆ ଆସୁ ଆସୁ ।    ୨୧
ପାଞ୍ଚଭାଇ ଭକ୍ସୁ ସର୍ବେ,    ନାହିଁ କିଛି ଭେଦ,
ନ ଦେଖି କହିଲା ମାତା,    ମାନିଗଲେ ବେଦ ।    ୨୧

ଲଲାଟେନ୍ଦୁ କବି

ସ୍ମାର୍ଟ୍ ମହାଭାରତ୍ — ୪/ଚତୁର୍ଥ ବିସ୍ଫୋରଣ

## ଦ୍ରୋଣ ଏକଲବ୍ୟ (କ)

ଶ୍ୱାନ କିଏ କଲ ମୌନ -    ବିଶ୍ୱାସେ ପଚାରି
ଏକଲବ୍ୟେ ଧନଞ୍ଜୟ    ଆଣିଲା ଘୋଷାରି ।    ୨୨
ଦ୍ରୋଣଙ୍କର ପ୍ରଶ୍ନ ଶୁଣି    ଭଣେ ଏକଲବ୍ୟ,
ଘେନ ଦଣ୍ଡବତ ତୁମେ    ସଦା ପୂଜିତବ୍ୟ ।    ୨୩
ଗୋପନେ ତୁମକୁ ପୂଜି    ଆଜି ମୁଁ କୁଶଳ,
ଅଧିକ ଶିଖାଅ ଗୁରୁ    ବିନେୟବତ୍ସଳ ।    ୨୪
ବିନେୟ= ଶିଷ୍ୟ

ଶୁଣ ଏବେ ସୁବ୍ରାହ୍ମଣ    ଦ୍ରୋଣଙ୍କ ଭାଷଣ,
କହିନ୍ତି — ସହିବ କିଏ    ତୋ ଉଦ୍ଧତ ପଣ?    ୨୫
ବିନାନୁମତି-ଦକ୍ଷିଣା    ଶିଖିଅଛୁ ପାଠ,
ପିଠିକୁ ତୋହର ଲୋଡା    ତେନ୍ତୁଳିର ଛାଟ ।    ୨୬
ଶିଖିଛି ଯା ରାଜପୁତ୍ର    ପାର୍ଥ ପରନ୍ତପ,
ବ୍ୟାଧପୁତ୍ର ! ଶିଖିଯିବୁ-    ଏଡିକି ବହପ?    ୨୭
ପଶିବାକୁ ଦେବି ନାହିଁ    ପ୍ରଶିକ୍ଷଣସ୍ଥଳେ,
କଳିରେ ଶିଖିବୁ କଳା    ଆରକ୍ଷଣ ବଳେ ।    ୨୮.

ସ୍ମାର୍ଟ୍ ମହାଭାରତ୍ — ୫/ପଞ୍ଚମ ବିସ୍ଫୋରଣ

## ଦ୍ରୋଣ ଏକଲବ୍ୟ (ଖ)

ଶୁଣି ଏକଲବ୍ୟ କହେ    ବିନମ୍ର ବଚନ -
ତୁମ ବାଣୀ କଲାଣି ମୋ    ଅନ୍ତର ଦହନ ।    ୨୯
ପଇସା ବୁଡିବ ନାହିଁ    କରୁଛି ଶପଥ,
କୁହ ଦେବ ପ୍ରାପ୍ୟ ତବ    କେତେ ନେବ ଅର୍ଥ?    ୩୦
ତୁମ୍ଭଠାରୁ ଶିଖି ସାରୁଁ    ସମର କୌଶଳ,
ରାଜ୍ୟ ଜିଣି ଟଙ୍କା ଆଣି    ଦେବି ମୁଁ ପ୍ରବଳ ।    ୩୧
କ୍ରୋଧବଶେ ଦ୍ରୋଣ ଭାଷେ    ଏଯାଏ ତ ବାକି;
ଶୁଝି ପରେ ଦବୁ, କାରେ    କରୁଅଛୁ ସାକ୍ଷୀ?    ୩୨
ଦକ୍ଷିଣା ଦେବାକୁ ଯଦି    ବଳାଇଛୁ ମନ,
ବାକି ଯା'ଖାଇଛୁ ଆଗ    ଦେଇ ଦେ ବହନ?    ୩୩
ଶିଷ୍ୟ ଭଣେ ଶ୍ରୀଚରଣେ    ଏବେ ମୁଁ ନିର୍ଦ୍ଧନ,
ଯା ଅଛି ମାଗିଲେ ଦେବି,    ଅକାଟ୍ୟ ବଚନ ।    ୩୪
ଭଣେ= କହେ

ମୌକା ଦେଖି ସ୍ୱାରି ଆଖି    ଗୁରୁ ଦେଲେ ମାଗି,
ଦକ୍ଷିଣ ବୃଦ୍ଧ ଅଙ୍ଗୁଷ୍ଠି    ଦେଇଦେ ଅଭାଗୀ ।    ୩୫
ସ୍ୱାରି= ମେଲାକରି

ସ୍ମାର୍ଟ୍ ମହାଭାରତ୍ — ୬/ଷଷ୍ଠ ବିସ୍ଫୋରଣ

### ଯୁଧିଷ୍ଠିରାର୍ଜୁନ

ସୂର୍ଯ୍ୟାସ୍ତେ ସମର ଅନ୍ତେ    ଭାଷେ ଯୁଧିଷ୍ଠିର
ରାଧେୟ ସଂହାରବାର୍ତ୍ତା    କହ ପାର୍ଥବୀର ।    ୩୬
ପାର୍ଥ କହେ ଭ୍ରାତ ସୂତ-    ସୁତ ନୁହେଁ ମୃତ,
କଲି ସତ୍ୟ ଉତ୍ଥାପନ,    ନୁହଇ ଅନୃତ ।    ୩୭
ସୂତସୁତ= ସୂତପୁତ୍ର; ଅନୃତ= ମିଥ୍ୟା

ବିଷାଦିତ ଧର୍ମସୁତ    ତହୁଁ ବାରମ୍ବାର
ନିନ୍ଦିଲେ - ଧିକ୍କାର, ତୋର    ଗାଣ୍ଡିବେ ଧିକ୍କାର ।    ୩୮
ଗାଣ୍ଡିବ ନିନ୍ଦନେ ଦ୍ରୁଣ    ତୋଳି ମହାବାହୁ,
କହେ ନନା ମାରିଦେବି    ଭାଗ୍ୟେ ଯାହା ଥାଉ ।    ୩୯
ଦ୍ରୁଣ= ଖଡ୍ଗ; ନନା= ବଡ ଭାଇ/ଭାଇନା

ଏହା ଦେଖି ଯୁଧିଷ୍ଠିର    ପରାଣ ବିକଳେ.
ଇତସ୍ତତଃ ଦଉଡିଲେ    ତିମିର ବହଳେ ।    ୪୦
ଅଗ୍ରତରେ ଯୁଧିଷ୍ଠିର,    ପଛେ ମହାଭାଗ,
ସ୍ତୁନକ ପଶ୍ଚାତେ ସତେ    ଆସ୍କନ୍ଦନେ ବାଘ ।    ୪୧
ସ୍ତୁନକ= ଛେଳି; ଆସ୍କନ୍ଦନ= ଆକ୍ରମଣ

ଏହିପରି କେଇଘଡି    ବିତନ୍ତେ ଶର୍ବରେ
ଶ୍ରୀ ଅଚ୍ୟୁତ କଲେ କ୍ଷାନ୍ତ    ପାର୍ଥ ଧନୁର୍ଦ୍ଧରେ ।    ୪୨
ଶର୍ବର= ଅନ୍ଧାର;

ସ୍ମାର୍ଟ୍ ମହାଭାରତ୍ — ୭/ସପ୍ତମ ବିସ୍ଫୋରଣ

### ଶାନ୍ତନୁ-ସତ୍ୟବତୀ ପ୍ରେମ

କୈବର୍ତ୍ତକୁମାରୀ ଦେଖି    ଶାନ୍ତନୁ ରାଜନ
କରନ୍ତେ ତାହାକୁ ଯାଇ    ପ୍ରଣୟ ଯାଚନ ।    ୪୩
ସତ୍ୟବତୀ ଭାଳେ ଇଏ    କି ରାଜ୍ୟ ପାଳୁଛି,
ଯୌବନୀ ତରୁଣୀ ଦେଖି    ତା କଥା ଭାଳୁଛି !    ୪୪
ଭୀଷ୍ମ ସମ ଦେବୋପମ    ଭେଣ୍ଡା ପୁଅ ଥାଇ
କୁଳବୃଦ୍ଧ ଦଗ୍ଧହୃଦ    କେଉଟୁଣୀ ପାଇଁ ।    ୪୫
ଗଙ୍ଗା ପରି ଦେବୀ ନାରୀ    ଛାଡିଲା ଯା ଘର
ଭ୍ରଷ୍ଟ କ୍ଷାତ୍ର କି ରଖିବ    ମର୍ଯ୍ୟାଦା ମୋହର?    ୪୬
ଏ ବୃଦ୍ଧକୁ ଅଉଷଧ    ଚଖାଇବି ପାନେ:
ରଜା କରି ବେବିନାହିଁ    କ୍ଷତ୍ରିୟସନ୍ତାନେ ।    ୪୭
ବାଢିଲା ଏମନ୍ତ ସର୍ତ୍ତ    ଦେଖି ବେଳକାଳ,
ବୁଢାରଜା ମସ୍ତକରୁ    ନିଃସରିଲା ଝାଳ ।    ୪୮
ଭୀଷ୍ମ ନ କରିବ ପୁତ୍ର,    ଥିବ ଅବାଡୁଆ,
ହସ୍ତିନାର ରଜା ହେବେ    କେଉଟୁଣୀ ଛୁଆ ।    ୪୯

ସ୍ମାର୍ଟ୍ ମହାଭାରତ୍ — ୮/ଅଷ୍ଟମ ବିସ୍ଫୋରଣ

### କୃଷ୍ଣ-ଦୁର୍ଯ୍ୟୋଧନ ବାର୍ତ୍ତା

ଦୁର୍ଯ୍ୟୋଧନ ଭାଳେ କୃଷ୍ଣ    କହୁଛ କି କଥା !
ପରଘର ମନୋଽନ୍ତର,    ପୂରାଉଛ ମଥା?    ୫୦
ପ୍ରଜାଙ୍କ ରାଜ୍ୟ କି ରଜା-    ବୋପାର ସମ୍ପତ୍ତି,
ବାଣ୍ଟିକୁଣ୍ଟି ଖାଇଯିବେ    ସନ୍ତାନ ସନ୍ତତି ?    ୫୧
ଅର୍ଜୁନକୁ ଭଲପାଅ,    ସେଟା ଭିନ୍ନ କଥା,
ସେଭାବେ ହୁଏନା କିନ୍ତୁ    ରାଷ୍ଟ୍ର ଅଖଣ୍ଡତା ।    ୫୨

ଏତେ ଭଲପାଅ, ଛାଡି   ରହୁ ନାହଁ ଦଣ୍ଡେ,
ଦେଉ ନାହଁ ତୁମ ନିଜ   ଦ୍ୱାରକାରୁ ଖଣ୍ଡେ?   ୫୩
ନିଜ ଧନ ଦେବାରେ ତ   ଏତେ କାତରତା,
ଭିକ୍ଷା ନେଇ ତାଙ୍କୁ ଦେଇ   କର ବଦାନ୍ୟତା?   ୫୪
ପାର୍ଥ-ଶଳା ତୁମେ ବଡ   କୁଚକ୍ରୀ ଈଶ୍ୱର,
ମୋ ଲାଗି ମୋ ଅଙ୍ଗରାଜ   ପ୍ରକୃତ ନିଜର ।   ୫୫
ଶୁଣିବିନି ମହାମାନୀ   ମଧୁ ପ୍ରବଞ୍ଚନ
କରିବାକୁ ଦେବି ନାହିଁ   ରାଷ୍ଟ୍ର ବିଭାଜନ ।   ୫୬
ପାଣ୍ଡବଙ୍କ କାନେକାନେ   ଧର୍ମ କଥା କୁହ,
କହିଲନି - ଦେଶାନ୍ତରେ   ଆଉ ଥରେ ରୁହ?   ୫୭
ଜାଣିନ କି ଶେଷ ବର୍ଷ   ମଳ ମାସ ଥିଲା,
ବାରମାସେ ସାରାବଂଶ   ବାହାରି ଆସିଲା !   ୫୮
ମୁହଁଖୋଲା କହିଦେଲା   ଜମା ଛାଡିବିନି,
ଜୀବନ୍ତରେ ଦେବି ନାହିଁ   ସୂଚ୍ୟଗ୍ରମେଦିନୀ ।   ୫୯
କୃଷ୍ଣ ବୋଲେ — ଶୁଣିବନି   ମୂଢ ହିତବାଣୀ,
ଏଙ୍କ ବଂଶ ଯିବ ନାଶ   କାଳ ଡାକିଲାଣି ।   ୬୦

ସ୍ମାର୍ଟ୍ ମହାଭାରତ୍
ବିଶେଷ କଥନ — ଭାଗ-୩ର
ଦୁଃଖିନୀ ଦ୍ରୌପଦୀ, ବା
ଦ୍ରୌପଦୀର ଭାବନା: ସ୍ୱୟଂବରରୁ ଧରା ହେଲା ପରେ

ଦ୍ରୌପଦୀ ଭାଳୁଛି ଏତ   ଅଦଭୂତ ଶାଶୂ !
କଲାଣି ନିର୍ବୋଧ ଆଜ୍ଞା   ନୂଆ ଆସୁ ଆସୁ ।   ୬୧ ॥
ଯୁଧିଷ୍ଠିର ଭୀମାର୍ଜୁନ   ସହଦେବ ନକ୍କୁ
ପାଞ୍ଚ ଭାଇ ସବୁତକ   ଗୋଟିଗୋଟି ଭକ୍କୁ ।   ୬୨ ॥
ନ ଦେଖି କହିଲା ମାତା,   ଶୁଣି ହେଲେ ତୁନି,
କହିଲେ ନି ନୁହଁ ଇଏ   ପୋକୁଡି ଘୁଗୁନି ।   ୬୩॥
ନ କହିଲେ ନାହିଁ, ଯେବେ   ଜାଣିଲା ସେ ବୁଢୀ
କଲା ନାହିଁ ଅନ୍ୟାଦେଶ,   ମାଇଲା ଘୁଙ୍ଗୁଡି ।   ୬୪ ॥
ନ ହେବେ କେ ଦେଢଶୁର,   ନ ହେବେ ଦିଅର,
ପାଞ୍ଚପତି, ଲାଜେ ପିତା   ନ ହେବେ ଖିଅର ।   ୬୫ ॥
ବାପଘରେ ଯେତେ ମୋର   ଦାସୀ ପରିବାରୀ,
କୁହାକୁହି ହେବେ- ଏଟା   ଦୁଷ୍ଟରିତ୍ରା, ନାରୀ ।   ୬୬ ॥
ପାଞ୍ଚପତି ସାଥେ ଯେବେ   ବୁଲୁଥିବି ବନେ,
ଟେରେଇ କଣେଇ ମୋତେ   ଚାହୁଁଥିବେ ଜନେ ।   ୬୭ ॥
କହୁଥିବେ ରଜାଝିଅ   ରଜାଘର ଟୋକା
ଏ କି କାର୍ଯ୍ୟ କଲେ ଏ ତ   ବ୍ରହ୍ମାଣ୍ଡର ବୋକା ।   ୬୮ ॥
ରେଞ୍ଜି ନାହିଁ ପ୍ଲସ୍ ନାହିଁ   ସ୍କୋପ୍ ସବୁ ଢିଲା,
ଭଲ୍ଲୁ ଫିର୍ବିଲ୍ ନାହିଁ ଯାନ   କେଉଁଠାରେ ଥିଲା ।   ୬୯ ॥
ଏଙ୍କୁ ଟିକେ ବୁଦ୍ଧି ଦିଅ   ଜଗତର ନାଥ,
ନଈ ବୋଲି କାଶ ବନେ   ନ ମାରନ୍ତୁ କାତ ।   ୭୦ ॥
ଲଲାଟେନ୍ଦୁ କବି  ୨୦୧୯୦୮୦୫୦୧୪୫

ଶଙ୍କାସମାଧାନ:
ସ୍ମାର୍ଟ୍ ମହାଭାରତ୍ — ଭାଗ-୩
ଦୁଃଖିନୀ ଦ୍ରୌପଦୀ କଥା
ପଚାରିଲ ତୁମେ ଯେଉଁ ପ୍ରଶ୍ନ ଗୁଣନିଧି,
ଦେଉଅଛି ତା ଉତ୍ତର ଶୁଣ ଯଥାବିଧି !

ପ୍ରଶ୍ନ:—
କୁନ୍ତୀ ସିନା ବୁଦ୍ଧିହୀନା   ନ ଦେଖି କହିଲା,
ପାଞ୍ଚଭାଇ ଗଧ ବୋଲି   ମୋ ମନ ବୁଝିଲା,

ଦ୍ରୌପଦୀ କୁହ କିଲାଗି ଭରିଲା ସମ୍ମତି
ପାଞ୍ଚପତି ଘେନି ପୁଣି ବୋଲାଇଲା ସତୀ ?
ଉତ୍ତର:—
ସମ୍ମତି ଦେଲା କି ଭୟେ କଲା ହାୟ ହାୟ,
ଭୀମଟା ତ ଦିଶୁଥାଏ ରାକ୍ଷାସ ପରାୟ; ୭୧
ହିଡିମ୍ବା ରାକ୍ଷସୀ ଯାର ମାନିଗଲା ବୋଲ,
ପାଞ୍ଚାଳୀ କି କରନ୍ତା ନ ମାନି ହରିବୋଲ? ୭୨
କିଏ ଜାଣେ କି ବିଚାରି ହେଲା ଶେଷେ ରାଜି,
ଏତେ କଥା ମୋତେ କିଆଁ ପଚାରୁଛ ଆଜି ? ୭୩
ମୁଁ ସିନା ପାଠୁ ପର୍ଯ୍ୟନ୍ତ ଶୁଣୁଛି ତୁମର,
ପଣ୍ଡିତଙ୍କୁ ପଚାରି କି ପାଇବ ଉତ୍ତର ? ୭୪
ବେଶି ପଚାରିଲେ ସିଏ ହେଇ ନିଆଁ ବାଣ
କହିବେ ଏ ଉଦ୍ଧତର ମୁହଁ ଭାରି ଟାଣ, ୭୫
ଏହା କଥା ସଭାଜନେ କେହି ଶୁଣ ନାହିଁ,
ଯମ ଆକୁ ଟାଙ୍କ ବାନ୍ଧି ରଖିବ ଟଙ୍ଗାଇ ! ୭୬
ମୁ କିନ୍ତୁ ନିର୍ଦ୍ଦୟ ନୁହଁ ଯମରଜା ପରି,
ତା ବୋଲି ଗୁମର ସବୁ ଜାଣିବି କିପରି? ୭୭
ଯାହା ମୁଁ ପାରିବି ସବୁ ଲେଖି ତ ଚାଲିଛି,
କଦାପି ଭାଳନା ବାକି ରଖି ଦେଲି କିଛି । ୭୮
ବିନା ପ୍ରଶ୍ନେ ପଢି ଚାଲ ପାଠ ମନ ଦେଇ,
ତୁମକୁ ବିଧର୍ମୀ ବୋଲି ନ କହନ୍ତୁ କେହି ! ୭୯

ଲଲାଟେନ୍ଦୁ କବି ୨୦୧୯୦୮୨୫୧୦୨୨

ସ୍ମାର୍ଟ୍ ମହାଭାରତ୍—୯/ନବମ ବିସ୍ଫୋରଣ

## ଭୀଷ୍ମଙ୍କୁ ଅମ୍ବାର ଦାବନ୍

ଅମ୍ବା କହେ ଭୀଷ୍ମ! ତିନି କନ୍ୟାର ହରଣ
ବୁଝାଅ କି ଭାବେ ତୁମ ଭଦ୍ର ଆଚରଣ । ୮୧
ନିଜେ ବାହା ହେବ ନାହିଁ, ରହିବ ଅଭଡା,
ବାଳୁତ ଭାଇର ଥାଳେ ସ୍ତ୍ରୀରତ୍ନ ଫୋପଡା? ୮୨
କହୁଛ ବିଚିତ୍ରବୀର୍ଯ୍ୟ ନାବାଳକ ପିଲା,
ତାଠି କନ୍ୟା ଛନ୍ଦିବାର ଦୁର୍ବୁଦ୍ଧି କୁଟିଳା? ୮୩
ବାଳୁତ ବୋଲିକି ତୁମେ ତା ଅଭିଭାବକ,
କି କରିବ କହ ବାହା ହେଇ ନାବାଳକ? ୮୪
ପିତା ମୋର କରିଥିଲେ ସ୍ୱୟମ୍ବର ସଭା,
ବିନା ଆମନ୍ତ୍ରଣେ ଯଶ ଅରଜିଲ ଅବା? ୮୫
କାଶୀରାଜ ନ ଥିଲେ ତ ତୁମ ଅପରାଧୀ,
କି ଲାଗି ଆଣିଲ ତାଙ୍କ କନ୍ୟା ଧରି ବାନ୍ଧି? ୮୬
ଅଧିକନ୍ତୁ ମନ ମୋର ଶାଲ୍ୱ ରାଜା ପାଶେ,
କହ ଏ ଟୋକାକୁ ବାହା ହେବି କି ସକାଶେ ! ୮୭
ଶାଲ୍ୱକୁ ମୁଁ ପତି ବୋଲି ମାନି ବାରମ୍ବାର
ତା ସାଥେ କରିଛି ପ୍ରେମ, ରାତ୍ରୀ ଅଭିସାର । ୮୮
ଶାଲ୍ୱ କହେ ତାହା ଭାଗ୍ୟେ ମୁହିଁ ମହାଦେବୀ
କହ ତେବେ ଅ଼ାନର ମୁଁ କେଉଁଭାବେ ହେବି । ୮୯
ଭୀଷ୍ମ କହେ ମୁକ୍ତ କଲି ଯାଇ ତାର ପାଶେ,
ରାଣୀ ସାଜି ସୁଖେ ରହ ଶାଲ୍ୱର ଉଆସେ । ୯୦

ସ୍ମାର୍ଟ୍ ମହାଭାରତ୍ — ୧୦/ଦଶମ ବିସ୍ଫୋରଣ

## ଅମ୍ବା-ଶାଲ୍ୱ ସାକ୍ଷାତ୍ ଓ ଫଳାଫଳ

ସବୁ ଶୁଣି ବିବରଣୀ ଅମ୍ବାର ଶ୍ରୀମୁଖେ
ଶାଲ୍ୱ କହେ ତୁମକୁ କି ଲଗାଇବି ବୁକେ? ୯୧

ଘଡି ଦୁଇଘଡି ନୁହଁ ଦିନଦିନ ଧରି
ଭୀଷ୍ମର ବନ୍ଦିନୀ ଥିଲ, ହେଲ ପରଘରୀ । ୯୨
ପ୍ରଜାଙ୍କ ବଚନେ ହେଲା ସୀତା ବନବାସ,
ତାଙ୍କଠୁ କି ସତୀ ତୁମେ, ବସାଇବି ପାଶ? ୯୩
ହେବ ନାହିଁ ବାହା, ତାର ଏତେ ଟାଣପଣ
କି ଲାଗି ତୁମକୁ କଲା ସେ ଅପହରଣ? ୯୪
ଏକା ଏକା ଆସିଗଲ ଏତେ ଦୂର ପଥ,
ମାନ ରଖି ଦେଲା ନାହିଁ ଭୀଷ୍ମ ଗୋଟେ ରଥ? ୯୫
ନାରୀସମ୍ମାନର ଯିଏ ଜ୍ଞାନବିବର୍ଜିତ,
ସିଏ କାହୁଁ ରଖିଥିବ ତୁମର ମହତ? ୯୬
ଯାଇ ନାହଁ ସ୍ୱ-ଇଚ୍ଛାରେ, ହେଇ ପାରେ ସତ,
ଏଠି ରହିବାରେ ନାହିଁ ବିଦୁଷଙ୍କ ମତ । ୯୭
ଫେରି ଯାଅ ନିରାପଦେ ଭୀଷ୍ମର ନିକଟେ,
ଘେନୁ ସେ ଦାୟିତ୍ୱ ଯେଣୁ ହରିଛି କପଟେ । ୯୮
ରାଜଧର୍ମଜ୍ଞାତା ଭୀଷ୍ମ ବଶିଷ୍ଠଙ୍କ ଶିଷ୍ୟ,
ତୁମ ଦୁଃଖ ମୋଚନ ତା କର୍ତ୍ତବ୍ୟ ଅବଶ୍ୟ ! ୯୯
ଶାଲ୍ୱ କଥା ଶୁଣି ଅମ୍ବା ଭେଏଁ ଭେଁ କାନ୍ଦିଲା,
କହେ ଭୀଷ୍ମ ଲାଗି ସ୍ୱପ୍ନ ମାଟିରେ ମିଶିଲା। ୧୦୦

ଲଲାଟେନ୍ଦୁ କବି

ସ୍ମାର୍ଟ୍ ମହାଭାରତ୍ — ୧୧/ଏକାଦଶ ବିସ୍ଫୋରଣ

## ଭୀଷ୍ମପର୍ଶୁରାମ ଫାଇଟିଂ

ଶାଲ୍ୱ ନିରାଦରେ ଅମ୍ବା ଆକ୍ରନ୍ଦ-ଆଶୟ
ନଗରୁ ନିଃସରି ନେଲା ଆଶ୍ରମେ ଆଶ୍ରୟ । ୧୦୧
କହୁକହୁ ମୁନିଜନେ ଅମ୍ବା ତା ବୃତ୍ତାନ୍ତ
ହୋତ୍ରବାହନ ତା ମାତା- ମହ ଉପଗତ । ୧୦୨
ଅାସି ପୁଣି କ୍ଷାତ୍ରହନ୍ତା କହେ ପର୍ଶୁରାମ,
ବୁଝୁ ଭୀଷ୍ମ ଅବା ଲଢୁ ମୋ ସାଥେ ସଂଗ୍ରାମ । ୧୦୩
ଭୀଷ୍ମଙ୍କୁ କହନ୍ତି ଡାକି ସରସ୍ୱତୀ ତୀର,
ବିଭା ହୁଅ, ମାନରକ୍ଷା କର ଯୁବତୀର । ୧୦୪
ଏ ନାରୀ ଦୁଃଖିନୀ ଅତି, ତୁମେ ତା କାରଣ,
ଆଜ୍ଞା ମାନ ଅବା ଦିଅ କୁରୁକ୍ଷେତ୍ରେ ରଣ । ୧୦୫
ଆଜ୍ଞା ନ ମାନନ୍ତେ ଭୀଷ୍ମ ପୁଣ୍ୟ କୁରୁକ୍ଷେତ୍ରେ,
ଦୁଇ ବୃଦ୍ଧ କଲେ ଯୁଦ୍ଧ ନାନା ଦିବ୍ୟ ଅସ୍ତ୍ରେ । ୧୦୬
ବାରମ୍ବାର ପରସ୍ପରେ କଲେ ଅଚେତନ,
ମାସକ ଦିବ୍ୟାସ୍ତ୍ରେ ହେଲା କମ୍ପିତ ଗଗନ।୧୦୭
ରଣଭୂମେ ହେଲା ମାତ୍ର ଶକ୍ତି ଅପଚୟ,
ହେଲା ନାହିଁ କାହା ଜୟ ଅବା ପରାଜୟ । ୧୦୮
ପର୍ଶୁରାମ କହେ ଅମ୍ବେ ଘୋର ରଣ କରି
ନ ଜିତିଲି, କର ଯାହା କରମ ଆଦରି । ୧୦୯
ଅମ୍ବା କରେ କ୍ରୋଧଭରେ ତପ ସଂସାଧନ
ବଦଲା ନେବାକୁ କରି ଭୀଷ୍ମର ନିଧନ । ୧୧୦

ଲଲାଟେନ୍ଦୁ କବି

ସ୍ମାର୍ଟ୍ ମହାଭାରତ୍—୧୨/ଦ୍ୱାଦଶ ବିସ୍ଫୋରଣ

## ଭୀଷ୍ମକର୍ଣ୍ଣ ପ୍ରେମାଳାପ

ପ୍ରଦୋଷ ସମର ଶେଷେ ଶରଶଯ୍ୟା ପାଶେ
ଭୀଷ୍ମଙ୍କୁ ଘେରିଲେ ସର୍ବେ ଦରଶନ ଆଶେ । ୧୧୧

ବୃଦ୍ଧଶିଶୁନରନାରୀ- କୌରବପାଣ୍ଡବ,
ବହୁଜନ୍ୟ ଉଦ୍ବେଳନେ ଲାଗେ ଶୋକାର୍ଣ୍ଣବ । ୧୧୨
ଶର ମାରି ପାର୍ଥ ଦେଇ ଜଳ ଉପଧାନ
ଭୀଷ୍ମଙ୍କର ପୀଡା କଲା ଲଘୁ ଅବସାନ । ୧୧୩
ବଢିଲା ରଜନୀ, ସର୍ବେ ବାହୁଡିଲେ ଧୀରେ,
ପୁରନାରୀ ଯେ ଯା ପୁରେ, ଯୁଯୁସୁ ଶିବିରେ । ୧୧୪
ଅନ୍ଧକାରେ ଦେଖି ଦୂରେ ନର ଜ୍ୟୋତିର୍ମୟ
ଭୀଷ୍ମ ପଚାରନ୍ତି କିଏ, ଦିଅ ପରିଚୟ । ୧୧୫
କର୍ଣ୍ଣ କହେ ଅଧମ ମୁଁ ସାରଥି କୁମର
ଆଜ୍ଞା କଲେ ଭକ୍ତି ଭରେ ଛୁଇଁବି ପୟର । ୧୧୫
ଗଦ୍ଗଦେ ଭାଷିଲେ ଭୀଷ୍ମ ଆସ ପାଶେ ଆସ
ପାଦ ପାଶୁ ଆସ ମୋର ମସ୍ତକର ପାଶ । ୧୧୬
ଔତ୍ସୁକ୍ୟେ ବାତ୍ସଲ୍ୟ ଭରା କରି ଆଲିଙ୍ଗନ
ଆଙ୍କିଲେ କର୍ଣ୍ଣର ମାଥେ ଅନେକ ଚୁମ୍ବନ । ୧୧୭
କହିଲେ ତୋ ଅଭିମାନ ବୁଝୁଛି ମୁଁ କର୍ଣ୍ଣ,
ଜୀବନେ ଅନେକ ତୋତେ କରିଛି ଭର୍ତ୍ସନ । ୧୧୮
ଦୁର୍ଯ୍ୟୋଧନ ସାଥୀ ତୁହି, ସେ ଗୋଟେ କାରଣ;
କେତେ ଭଲ ପାଏ ତୋତେ ଜାଣିନୁ ତୁ କର୍ଣ୍ଣ । ୧୧୯
ଆସି ଗଲେ ଏତେ ବୀରେ, କଲି ସମ୍ବୋଧନ,
ପାର୍ଥକୁ ବି ଦେଇ ନାହିଁ ଗୋଟେ ବି ଚୁମ୍ବନ । ୧୨୦
ସୂତପୁତ୍ର ନୁହଁ ତୁହି କୁନ୍ତୀର ତନୟ,
ମୋତେ ଜଣାଅଛି ତୋର ପକ୍କା ପରିଚୟ । ୧୨୧
ଏହିପରି କିଛି କାଳ ଗଲା ଭାବୋଚ୍ଛ୍ୱାସେ,
କର୍ଣ୍ଣ ଗଲା ପର ଦିନ ପ୍ରସୂତି ସକାଶେ । ୧୨୨
ଲଲାଟେନ୍ଦୁ କବି

ସ୍ମାର୍ଟ୍ ମହାଭାରତ୍ - ୧୩/ତ୍ରୟୋଦଶ ବିସ୍ଫୋରଣ

## ପାଣ୍ଡୁ, ମାଦ୍ରୀଙ୍କ ସାଡେନ୍ ଡେଥ୍

ଅରଣ୍ୟରେ କରୁଥିଲେ ପାଣ୍ଡୁ ବିଚରଣ,
ମନା ବେଳେ ମିରିଗକୁ ମାରି ଦେଲେ ବାଣ । ୧୨୩
ମୃଗ କହେ କିନ୍ଦମ ମୁଁ ମୁନି ବନବାସେ,
ମନ୍ଦ କର୍ମେ ମୃଗୀ ପାଶେ ଏହି ରୂପେ ଆସେ । ୧୨୪
ଶାପ ଦେଲି ନ ପାଇବ ତୁମେ ନାରୀସୁଖ,
ତହିଁରେ ପ୍ରବୃତ୍ତି ମାତ୍ରେ ଯିବ ମୃତ୍ୟୁମୁଖ । ୧୨୫
ଏହା ଜାଣି ଦୁଇ ରାଣୀ ରହିଲେ ଦୂରେଇ,
କାମ ଆସେ ତାଙ୍କୁ ପାଶେ ନ ଦେଲେ ପୂରେଇ । ୧୨୬
ଦେବତାଙ୍କ ବରଦାନେ ପୁତ୍ର ହେଲେ ଜାତ.
ପର ଛୁଆ ଘରେ ରଖି ପାଣ୍ଡୁ ହେଲେ ତାତ । ୧୨୭
ମାଦ୍ରୀ ଥରେ ପାଣ୍ଡୁ ପାଶେ ଗଲେ ବେଶ ଧରି,
ଛୁଅନ୍ତେ କାମ ପ୍ରବୃତ୍ତି ପାଣ୍ଡୁ ଗଲେ ମରି । ୧୨୮
ତାହାଙ୍କର ଚିତାଗ୍ନିରେ ମାଦ୍ରୀ ହେଲେ ସତୀ ।
ଅପତି କୁନ୍ତୀର କତି ପାଞ୍ଚଟି ସନ୍ତତି । ୧୨୯
(ଲୁଚି ଲୁଚି ହସୁଥିଲେ ସହଦେବ, ନକ୍କୁ,
ନୂଆ ମାତା ପାଇ ମର୍ତ୍ତ୍ୟେ ପାଦ ରଖି ରଖି !) ଓ
କୁନ୍ତୀ କହେ କିଆଁ ଟୋକୀ ପତି ପାଶେ ଗଲୁ?
ଜାଲଜାଲ ଶାଢୀ ପିନ୍ଧି ଏ କି କାମ କଲୁ ? ୧୩୦
ଜାଣିନୁ କି ଜମା ଟୋକୀ ଅଣ୍ଡିରାଙ୍କ ମତି ?
ଦେହ ଦେଖାଇଲେ ତାଙ୍କ ବିଗିଡେ ପ୍ରକୃତି ! ୧୩୧
ସତୀ ହେଇ ଗଲୁ କାହିଁ, ସ୍ୱର୍ଗ ନା ନର୍କରେ?
ଦୁଇ ଗୋଟି ଏକ୍ସଟ୍ରା ଛୁଆ ଛନ୍ଦି ମୋ ବେକରେ ! ୧୩୨
ଲଲାଟେନ୍ଦୁ କବି

ସ୍ମାର୍ଟ୍ ମହାଭାରତ୍ - ୧୪/ଚତୁର୍ଦ୍ଦଶ ବିସ୍ଫୋରଣ

### ପଞ୍ଚପାଣ୍ଡବଙ୍କ ଉତ୍ପତ୍ତି

ଅଭିଶପ୍ତ ପାଣ୍ଡୁ କହେ —   କୁନ୍ତୀ କିଛି କର,
ବୁଦ୍ଧି ବଳେ ପୁତ୍ର ଆଣ,   ମୋର ବଂଶଧର ।   ୧୩୩
କୁନ୍ତୀପାଶେ ଥିଲା ଦେବ-   ଆବାହନ ସୂତ୍ର
ଧର୍ମକୁ ଆମନ୍ତ୍ରି ଜାତ   କଲେ ଧର୍ମପୁତ୍ର ।   ୧୩୪
ସେହି ମନ୍ତ୍ରେ ପୁଣି ବଳ-   ବନ୍ତ ସୁତ ପାଇଁ,
ଡାକନ୍ତେ ବାୟୁଦେବତା   ଆସିଲେ ଓହ୍ଲାଇ ।   ୧୩୫
ବର ଦେଲେ, ଭୀମ ହେଲା   ଗର୍ଭୁ ଲମ୍ଫ ମାରି,
ପଥରକୁ ଗୁଣ୍ଡ କଲା   ପୟର କଚାଡି !   ୧୩୬
ଚାହିଁ କୁନ୍ତୀ ସର୍ବଶତ୍ରୁ   ବିନାଶ-ନିପୁଣ,
ଇନ୍ଦ୍ରଙ୍କୁ ତୋଷାଇ ତପେ   ପାଇଲେ ଅର୍ଜୁନ !   ୧୩୮
ଫଳତଃ ମାଦ୍ରୀର ମନେ   ପୁତ୍ର ଇଚ୍ଛା ଦେଖି
ମାଦ୍ରୀ ହାତେ ମନ୍ତ୍ରଟିକି   କୁନ୍ତୀ ଦେଲେ ଲେଖି ।   ୧୩୯
ସୌମ୍ୟ ବୀର ଆଶେ ତୋଷି   ଅଶ୍ୱିନୀକୁମାର,
ନକୁଳ ଓ ସହଦେବ   ଜନ୍ମିଲେ ତାହାର ।   ୧୪୦
ଏଭାବେ କୁନ୍ତୀର ତିନି,   ମାଦ୍ରୀଗର୍ଭୁ ଦୁଇ,
ପାଣ୍ଡୁଙ୍କୁ ଡାକିଲେ ବାପା   ସର୍ବେ ବଡ ହୋଇ !   ୧୪୧
୨୦୧୮୧୦୨୧୧୫୧୫

ସ୍ମାର୍ଟ୍ ମହାଭାରତ୍ - ୧୫/ପଞ୍ଚଦଶ ବିସ୍ଫୋରଣ

### ଶତ କୌରବ ଛୁଆଙ୍କ ଜନ୍ମ

ଗାନ୍ଧାରୀଠି ହେଲା   ମାତୃଭାବର ଉଦ୍ଗମ:
ଶକ୍ତିଯୁତ ଶତସୂତ   କରିବ ଜନମ ।   ୧୪୨
ବ୍ୟାସଙ୍କଠୁ ମିଳିଗଲା   ଆଶିଷ ନିଚୟ,
ଗାନ୍ଧାରୀର ହେଇଗଲା   ଗରଭ ଉଦୟ ।   ୧୪୩
ଦୁଇ ବର୍ଷ ହେଲା ନାହିଁ   ପ୍ରସବ ବେଦନା,
ଗାନ୍ଧାରୀ ଭାବିଲା ଆଉ   ନାହିଁ ସମ୍ଭାବନା ।   ୧୪୪
ପତି ଅଗୋଚରେ ଗର୍ଭ-   ପାତ ଦେଲା କରି,
ଶକ୍ତ ଏକ ମାଂସପିଣ୍ଡ   ଲୌହ ଖଣ୍ଡ ପରି ।   ୧୪୫
ବ୍ୟାସ ଆସି ଗାଳି କରି   ଆଦେଶ କଲାରେ,
ରଖିଦେଲା ମାଂସପିଣ୍ଡ   ମାଟି ଗାମଲାରେ ।   ୧୪୬
ଜଳଦାନେ ଫାଟି ତାହା   ହେଲା ଚିକି ଚିକି,
ଶହେ ଏକ କୁଣ୍ଡ ମଧ୍ୟେ   ପଡିଲା ଛିଟିକି ।   ୧୪୭
ଦୁଇବର୍ଷ ଗତେ ତହୁଁ   ସନ୍ତାନ ଜନ୍ମିଲା,
ଶତପୁତ୍ର ପୁଣି ଏକ   ଦୁହିତା ଦୁଃଶିଳା ।   ୧୪୮
ଧୃତରାଷ୍ଟ୍ର ଭାଳେ - ହେଲେ   ଯମଜ ସନ୍ତାନ
ପଛେ ଜାତ ବଡ, ଯେଣୁ   ଆଗ ଗର୍ଭାସୀନ   ୧୪୯
ଦୁର୍ଯ୍ୟୋଧନ ଚାରିବର୍ଷ   ତଳୁ ଗର୍ଭେ ଥିଲା,
ଯୁଧିଷ୍ଠିର ତା'ଠୁବଡ?   କି ଅନ୍ୟାୟ ହେଲା ।   ୧୫୦
୨୦୧୮୧୦୩୪୧୯୩୦

ସ୍ମାର୍ଟ୍ ମହାଭାରତ୍ — ୧୬/ଷୋଡଶ ବିସ୍ଫୋରଣ

### ଛୁଆ ହିସାବ—ପ୍ରଥମାର୍ଦ୍ଧ

ଧୃତରାଷ୍ଟ୍ର-ଶତପୁତ୍ର: ବଡ-ଛୋଟ କରି,
ଦୁଇଠାରୁ ଘୋଷୁଥିବ ପଣିକିଆ ପରି ।
——(୦!୦)——
ଦୁଃଶାସନ ଦୁସ୍ସହ ଦୁଶ୍ଶଳ,  ଜଳସନ୍ଧ-୫
ସମ ସହ ବିନ୍ଦ ଅନୁବିନ୍ଦ (କ୍ର) ଦୁର୍ଦ୍ଧର୍ଷ-୧୦   ୧୫୧

ସୁବାହୁ ଦୁଷ୍ପ୍ରଘର୍ଷଣ ଦୁର୍ମର୍ଷଣ (ତଳେ)-୧୩
ଦୁର୍ମୁଖ ଦୁକର୍ଣ୍ଣ କର୍ଣ୍ଣ ବିବିଶତି (ହେଲେ)-୧୭ ୧୫୨
ବିକର୍ଣ୍ଣ, ଶଳ(ରୁ) ସତ୍ୱ ସୁଲୋଚନ ଚିତ୍ର -୨୨
ଉପଚିତ୍ର ଚିତ୍ରାକ୍ଷ(ପଛକୁ) ଚାରୁଚିତ୍ର -୨୫ ୧୫୩
ସରାଶନ ଦୁର୍ମଦ ଦୁର୍ବିଗାହ (ଆସିଲେ)-୨୮
ବିବିସ୍ତୁ ବିକଟାନନ ଊର୍ଣ୍ଣନାଭ (ଥିଲେ)-୩୧ ୧୫୪
ସୁନାଭ (ଶ୍ରୀ) ନନ୍ଦ ଉପନନ୍ଦ ଚିତ୍ରବାଣ -୩୫
(ତହୁଁ) ଚିତ୍ରବର୍ମା ସୁବର୍ମା ଦୁର୍ବିମୋଚନ-୩୮ ୧୫୫
ଆୟୋବାହୁ ମହାବାହୁ ଚିତ୍ରାଙ୍ଗ (ତା'ପର)-୪୧
(ଶ୍ରୀ)ଚିତ୍ରକୁଣ୍ଡଳ ଭୀମବେଗ ଭୀମବଳ-୪୪ ୧୫୬
ବଳାକୀ ବଳବର୍ଦ୍ଧନ ଉଗ୍ରାୟୁଧ(ପର)-୪୭
(ଶ୍ରୀ)ସୁଷେଣ କୁଣ୍ଡଧାର(ପରେ) ମହୋଦଦର ।୫୦ ୧୫୭

ଛୁଆସଂଖ୍ୟା ବଢିବଢି
ଶଏ ହେଲେ ରଖ ଖଡି ।

ସ୍ମାର୍ଟ୍ ମହାଭାରତ୍ -୧୭/ସପ୍ତଦଶ ବିସ୍ଫୋରଣ

### ଛୁଆ-ହିସାବ-ଦ୍ବିତୀୟାର୍ଦ୍ଧ

ଦେଇଥିଲି ଗାନ୍ଧାରୀର ଛୁଆ ନାଁ ପଚାଶ,
ବାକି ନିଅ ଘୋଷିଘାଷି କରୁଥିବ ଚାଷ !
——(୦|୦)——
ଚିତ୍ରାୟୁଧ ନିଷଙ୍ଗୀ (ଶ୍ରୀ)ପାଶୀ ବୃନ୍ଦାରକ-୫୪
ଦୃଢବର୍ମା ଦୃଢକ୍ଷତ୍ର  ସୋମକୀର୍ତ୍ତି(ଦେଖ)-୫୭ ୧୫୮
ଅନୁଦର ଦୃଢସନ୍ଧ ଜରାସନ୍ଧ (ବାବା)-୬୦
ମସ୍ୟସନ୍ଧ (ଶ୍ରୀ)ସଦଃସୁବାକ ଉଗ୍ରଶ୍ରବା-୬୩  ୧୫୯
ଉଗ୍ରସେନ ସେନାନୀ ଦୁଷ୍ପରାଜୟ (ଲେଖ)-୬୬
ଅପରାଜିତ (ଶ୍ରୀ)କୁଣ୍ଡଶାୟୀ ବିଶାଳାକ୍ଷ-୬୯ ୧୬୦
ଦୁରାଧର ଦୃଢହସ୍ତ ସୁହସ୍ତ (ପଶ୍ଚାତ୍ତୁ)-୭୨
ବାତବେଗ (ଶ୍ରୀ)ସୁବର୍ଚ୍ଚା (ଶ୍ରୀ)ଆଦିତ୍ୟକେତୁ- ୧୬୧
ବହ୍ବାଶୀ ନାଗଦନ୍ତ ଅଗ୍ରଯାୟୀ(ପରତଃ)-୭୮
କବଚୀ କଥନ କୁଣ୍ଡୀ ଉଗ୍ର ଭୀମରଥ -୮୩ ୧୬୨
ବୀରବାହୁ ଅଲୋଲୁପ (ତା ପରେ) ଅଭୟ -୮୬
ରୌଦ୍ରକର୍ମା ଦୃଢରଥାଶ୍ରୟ ଅନାଧୃଷ୍ୟ -୮୯ ୧୬୩
କୁଣ୍ଡଭେଦୀ ବିରାବୀ (ଶ୍ରୀ)ପ୍ରମଥ ପ୍ରମାଥୀ-୯୩
ଦୀର୍ଘରୋମା ଦୀର୍ଘଦାହୁ ମହାବାହୁ (ଅତି)-୯୬ ୧୬୪
ବ୍ୟୂଢୋରସ୍କ (ଶ୍ରୀ)ଖନକଧ୍ବଜ (ଶ୍ରୀ)କୁଣ୍ଡାଶୀ-୯୯
ବିରଜା(ଠି ଶହେ) ଯୁଯୁସ୍ତୁ(ଠି ୧ ବେଶି)୧୦୧ ୧୬୫

ଏହିପରି ମୋଟ ଶହେ,
କେଉଁ କ୍ରମିକରେ କିଏ ?
କୌରବ ୧୦୧ ଭାଇ ଲିଷ୍ଟ ଏକତ୍ର ସମାପ୍ତ
ଲଲାଟେନ୍ଦୁ କବି ୨୦୧୮୧୦୨୩

ସ୍ମାର୍ଟ୍ ମହାଭାରତ୍ — ୧୮/ଅଷ୍ଟାଦଶ ବିସ୍ଫୋରଣ

### ଦେବତାଙ୍କ ଉଦ୍ଭବ ଓ
### ପୋପୁଲେସନ୍

ମୁନିଜନେ ଉଗ୍ରଶ୍ରବା     ନୈମିଷାରଣ୍ୟକେ
କହେ ଶୁଣ ପ୍ରଜୋତ୍ପତ୍ତି     କହିବି ତୁମ୍ଭକେ । ୧୬୬
ଏ ଜଗତ ଥିଲା ଯେବେ     ଅନ୍ଧକାରମୟ,
ନ ଥିଲେ ଏ ଭୂତ ଦେହେ     ପ୍ରାଣୀ ସମୁଚୟ ୧୬୭
ସୁବିଶାଳ ଅଣ୍ଡାଟିଏ     ହେଲା ସମୁତ୍ପନ୍ନ,
ନାନା ଜ୍ୟୋତିର୍ଯୁତ ତାର     ଦିବ୍ୟ ଆବରଣ । ୧୬୮
ଶ୍ରୁତିରେ ରହିଛି ତାର     ବିଶେଷ ବର୍ଣ୍ଣନ,
ତା ମଧ୍ୟୁ ଆସିଲେ ବ୍ରହ୍ମା,     ସତ୍ୟ, ସନାତନ । ୧୬୯

ବାହାରିଲେ ତାହାପରେ ପ୍ରଚେତା ଦଶକ,
ସପ୍ତର୍ଷି, ଚଉଦ ମନୁ, ସାତ ସୁତ ଦକ୍ଷ । ୧୭୦
ବିଶ୍ୱେଦେବା, (ଶ୍ରୀ)ଆଦିତ୍ୟ, ଅଶ୍ୱିନୀକୁମାର,
ବସୁ, ଯକ୍ଷ, ଦିଶା, ସାଧ୍ୟ, ପିଶାଚ, ପିତର । ୧୭୧
ଗୁହ୍ଯକ, ବ୍ରହ୍ମର୍ଷି, ଦିଶା, ରାଜର୍ଷି, ଦ୍ୟୁଲୋକ,
ପୃଥ୍ୱୀ-ଜଳ-ଅଗ୍ନି-ବାୟୁ, ଏ ସର୍ବତୋମୁଖ । ୧୭୨
ସମ୍ବତ୍ସର ଋତୁ ମାସ ପକ୍ଷ ଦିବା, ଦୋଷା,
ଅଣ୍ଡା ଫାଟି ଗୋଟିଗୋଟି ଆସିଲେ ସହସା । ୧୭୩
ତେତିଶ, ତେତିଶ ଶତ, ତେତିଶ ହଜାର,
ଗାଏମୋଟ ଦେବାଦେବୀ ପ୍ରଳୟୁ ବାହାର । ୧୭୪

୩୩+୩୩୦୦+୩୩୦୦୦=୩୬୩୩୩

ବିବସ୍ୱାନଙ୍କର ଥିଲେ ବାରଟି ତନୟ,
ଦିବଃପୁତ୍ର ବିଭାବସୁ, ଚକ୍ଷୁ, ଆଶାବହ' ୧୭୫
ସବିତା, ଋଚିକ, ଆତ୍ମା, ରବି, ଅର୍କ, ଭାନୁ,
ଦଶ ଗଲେ, ଆସିଗଲେ ମନୁ, ମହାଭାନୁ । ୧୭୬
ମନୁଙ୍କର ଦୁଇ ପୁତ୍ର, ସୁଭ୍ରାଟ୍ ଟିକେ ସାନ,
ବଡ ଦେବଭ୍ରାଟଙ୍କର ତିନିଟି ସନ୍ତାନ । ୧୭୭
ଦଶଜ୍ୟୋତି, ଶତଜ୍ୟୋତି, ସହସ୍ରଜ୍ୟୋତି ଏ,
କେ କେତେ ଛୁଆର ବାପ ସେ ହିସାବ ଦିଏ । ୧୭୮
ଦଶଜ୍ୟୋତିଙ୍କର ଛୁଆ ଦଶ ସହସ୍ରକ,
ଶତଜ୍ୟୋତିଙ୍କ ଛୁଆ ସଂଖ୍ୟା ଏକ ଲକ୍ଷ । ୧୭୯
ସହସ୍ରଜ୍ୟୋତିଙ୍କ ଛୁଆ ଦଶଗୁଣ ତହୁଁ,
ମନଦେଇ ପଢଭାଇ, ପାଠ ମନେ ରହୁ । ୧୮୦
ତେତିଶ କୋଟି ଦେବ ରହିଲେ ବାକି,
ହିସାବ ଦେଦି ଦିନେ ରଖିବ ଲେଖି !
ଲଲାଟେନ୍ଦୁ କବି

ସ୍ମାର୍ଟ୍ ମହାଭାରତ୍ — ୧୯/ଊନବିଂଶ ବିସ୍ଫୋରଣ

## ସର୍ପ ଅରୁଣ ଗରୁଡଙ୍କ ଉଦ୍ଭବ

ଶୌନକଙ୍କ ଅନୁରୋଧେ ଉଗ୍ରଶ୍ରବା ମୁନି
ଭଣେ— ସର୍ପ କଥା ଶୁଣ ପାଶେ ବସ ତୁନି । ୧୮୧
ସତ୍ୟଯୁଗେ ଥିଲେ ଜଣେ ଦକ୍ଷପ୍ରଜାପତି,
ଦୁଇଗୋଟି ଥିଲେ ତାଙ୍କ କନ୍ୟା ଗୁଣବତୀ । ୧୮୨
କଦ୍ରୁ ଓ ବିନତା ନାମ୍ନୀ ଏ ବେନି ଦୁହିତା
କଶ୍ୟପଙ୍କୁ ବିବାହରେ ଦେଲେ ତାଙ୍କ ପିତା । ୧୮୩
କଶ୍ୟପ ପ୍ରସନ୍ନ ମନେ ପଚାରିଲେ ଥରେ,
କୁହ ଦୁଇ ପତ୍ନୀ କିସ ନବ ମୋଠୁ ବରେ । ୧୮୪
କଦ୍ରୁ ମାଗିଲା ସହସ୍ର ଦୀପ୍ତ ନାଗ ସୁତ,
ବିନତା ମାଗିଲା ଦୁଇ ତହୁଁ ଶ୍ରେଷ୍ଠ ପୁତ । ୧୮୫
ଗର୍ଭ ସଞ୍ଚରଣେ ମୁନି ଅରଣ୍ୟେ ଚଳିଲେ,
ଦୁଇ ସଉତୁଣୀ ଯେଝା ଗର୍ଭ ସମ୍ଭାଳିଲେ । ୧୮୬
କାଳେ କଦ୍ରୁ ଜନ୍ମ କଲା ନାଗ ହଜାରଟା,
ବିନତାର ଅଣ୍ଡା ଦୁଇ ରହିଲେ ଅଫୁଟା । ୧୮୭
ବିନତା ଗୋଟିଏ ଅଣ୍ଡା ଦବାରୁ ଫୁଟେଇ,
ଅରୁଣ ଜନ୍ମିଲା ତହୁଁ ବିକଳାଙ୍ଗ ହେଇ । ୧୮୮
ଅରୁଣ ଶର୍ମିଲା ମା ଗୋ ବ୍ୟଙ୍ଗ କଲୁ ଆସି!
ପାଞ୍ଚ ଶ ବରଷ ହେବୁ ସଉତୁଣୀ ଦାସୀ । ୧୮୯
ସାବଧାନେ ଆନ ଶିଶୁ କରିଲେ ବାହାର,
ମୋ ଭାଇ କରିବ ତୋତେ ଶାପରୁ ଉଦ୍ଧାର । ୧୯୦

ୟା ବୋଲି ଅରୁଣ କ୍ରୋଧେ ଶୂନ୍ୟେ ଗଲା ଉଡି,
ସୂର୍ଯ୍ୟଙ୍କ ସାରଥୀ ସାଜି ଭିଡିଲା ଦଉଡି । ୧୯୧
ବିନତା ଭାଳୁଛି ପୁତ୍ର କର୍ମେ ଦୁଃଖ ଥୁଆ:
ଏତେ ବଡ ରଥକୁ ମୋ ହେଣ୍ଡିକେପ୍‌ଡ୍ ଛୁଆ ! ୧୯୨
ଆନ ଅଣ୍ଡାଟିକୁ କଲା ଅନେକ ଯତନ,
ଜନ୍ମିଲା ଗରୁଡ ତହୁଁ, ବିଷ୍ଣୁଙ୍କ ବାହନ । ୧୯୩
ଲଲାଟେନ୍ଦୁ କବି

ସ୍ମାର୍ଟ୍ ମହାଭାରତ୍ — ୨୦/ବିଂଶ ବିସ୍ଫୋରଣ

## ସୁନ୍ଦ ଅନୁସୁନ୍ଦଙ୍କ ସ୍ୱଟ୍ ଡେଥ୍

ହିରଣ୍ୟକଶିପୁ ସୁତ ସୁନ୍ଦ ଅନୁସୁନ୍ଦ
ତପ ବଳେ ବ୍ରହ୍ମା ବରେ ଆନନ୍ଦେ ଗଦ୍ଗଦ । ୧୯୪
ତିନିପୁରେ ନିରଙ୍କୁଶ ହେବେ ମୃତ୍ୟୁଜୟୀ,
ମୃତ୍ୟୁ ହେବ ପରସ୍ପରେ ହେଲେ ଆତତାୟୀ । ୧୯୫
ବର ପାଇ ଦୁଇ ଭାଇ ଜିଣିଲେ ଜଗତ,
ସୁରନରେ ତିନିପୁରେ କଲେ ଉତ୍ପୀଡିତ । ୧୯୬
ଦେବଙ୍କ ଗୁହାରି ଶୁଣି ଭାଳେ ପ୍ରଜାପତି,
ମୂଢେ ଦେଲେ ବଳ ବିଦ୍ୟା ଏହି ପରିସ୍ଥିତି । ୧୯୭
କରିବାକୁ ଏ ଦୁହିଙ୍କୁ ଶତ୍ରୁ ପରସ୍ପର
ସୁନ୍ଦରୀ ରମଣୀ ଲୋଡା, ଚାଲିଲା ବିଚାର । ୧୯୮
ବ୍ରହ୍ମାଙ୍କ ବଚନେ ଆସି ଶିଳ୍ପୀ ବିଶ୍ୱକର୍ମା
ଗଢିଲେ ଅପୂର୍ବା ନାରୀ, ନାମ ତିଳୋତ୍ତମା । ୧୯୯
ସଂସାରର ଶ୍ରେଷ୍ଠ ରତ୍ନ ତିଳ ତିଳ କରି,
ତିଳୋତ୍ତମା ଅଙ୍ଗେ ଅଙ୍ଗେ ରହି ଥିଲା ଭରି । ୨୦୦
ତିଳୋତ୍ତମା ପ୍ରେମେ ଦୁହେଁ ମଦମତ୍ତ ଭାଇ,
ପରସ୍ପରେ ଚଳାଇଲେ ତୁମୁଳ ଲଢାଇ । ୨୦୧
ମହାଯୁଦ୍ଧେ ଦୁହେଁ କ୍ଷତ ବିକ୍ଷତ ରକ୍ତାକ୍ତ
ସ୍ୱଟ୍‌ଡେଥ୍‌ହେବା ରେ ତିଳୋ- ତ୍ତମା ଅନ୍ତର୍ହିତ । ୨୦୨

ଲଲାଟେନ୍ଦୁ କବି
୨୦୧୮୧୧୧୨୨୦୫୦*

ସ୍ମାର୍ଟ୍ ମହାଭାରତ୍ -୨୧/ଏକବିଂଶ ବିସ୍ଫୋରଣ

## ସନତ୍ସୁଜାତୀୟ,ଭାଗ-(କ)

ଧୃତରାଷ୍ଟ୍ର କହେ କାହା ବିଦ୍ୟା ଏ ବିଦୁର?
ସାରା ରାତି ଶୁଣାଇଲ ବାଣୀ କି ମଧୁର । ୨୦୩
ଅନୁଜ ! ଯା ଅଛି ବାକି କହିବ ବିସ୍ତାରି,
ଏ ପାଠ ଆଣିଛ କାହା ଖାତାରୁ ଉତାରି? ୨୦୪
ବିଦୁର କହେ ଅଗ୍ରଜ, ବ୍ରହ୍ମାଙ୍କ ତନୟ
ସନତ୍ସୁଜାତଙ୍କ ମୁଖେ ଯୋଗ୍ୟ ଏ ବିଷୟ । ୨୦୫
ଜାଣି ସୁଦ୍ଧା କହିବିନି, ବ୍ରହ୍ମବିଦ୍ୟା ଇଏ
ବ୍ରାହ୍ମଣଯୋଗ୍ୟ; ମୁଁ ଶୂଦ୍ର- ଗର୍ଭଜାତ କିଏ? ୨୦୬
ବିଦୁର ସେ ମୁନିବରେ ଆଣନ୍ତେ ଡକେଇ,
କହନ୍ତି ସନତ୍ସୁଜାତ - ଶୁଣ ମନ ଦେଇ । ୨୦୭
କେ ବିଚାରେ ସତ୍କର୍ମରେ ହୁଅ ମୃତ୍ୟୁଞ୍ଜୟୀ,
ଆନ କହେ ମିଥ୍ୟା ସବୁ - ମୃତ୍ୟୁ କିଛି ନାହିଁ । ୨୦୮
ଏ ବାଦବିବାଦ ସନ୍ଦେହ ମୁଁ କରୁଛି ମୋଚନ,
ସତ୍ୟ ବୋଲି ଜାଣ କ୍ଷାତ୍ର, ଉଭୟ ବଚନ । ୨୦୯
ମୋହବଶେ 'ମୃତ୍ୟୁ ଅଛି' କହନ୍ତି ପଣ୍ଡିତ ।
ପ୍ରମାଦ ହିଁ ମୃତ୍ୟୁ, ଅପ୍ର- ମାଦ ହିଁ ଅମୃତ । ୨୧୦

ପ୍ରମାଦେ ଆସୁରୀ ଜନେ    ମୃତ୍ୟୁ କବଳିତ,
ଅପ୍ରମାଦେ ବ୍ରହ୍ମରୂପେ    ସାଧୁଙ୍କ ଅସ୍ତିତ୍ୱ ।    ୨୧୧
ଏହିପରି ବହୁ ସତ୍ୟ    କହୁଛି ଭାରତ,
ଶୁଣ, ବୁଝ, ସର୍ବଶଙ୍କା    ହେବ ପରାହତ ।    ୨୧୨

ଲଲାଟେନ୍ଦୁ କବି
୨୦୧୮୧୧୧୪୧୮୨୦

ସ୍ମାର୍ଟ୍ ମହାଭାରତ୍ -୨୨/**ଦ୍ୱାବିଂଶ ବିସ୍ଫୋରଣ**

ସନତ୍ସୁଜାତୀୟ,ଭାଗ-(ଖ)

ବ୍ୟାଘ୍ର ସମ ମୃତ୍ୟୁ କାରେ    କରେନା ଭକ୍ଷଣ,
ଅନେକେ କହନ୍ତି ଯମ    ମୃତ୍ୟୁର କାରଣ ।    ୨୧୩
ଯମ କରେ ପିତୃଲୋକେ    ରାଜ୍ୟର ଶାସନ,
ପୁଣ୍ୟାତ୍ମାପାଳନ ପୁଣି    ପାପୀର ତାଡନ ।    ୨୧୪
କ୍ରୋଧଲୋଭମୋହମଦ    ଯମର ଆଦେଶେ,
ବୁଦ୍ଧି ବାମ କରି ପାପୀ-    ଶରୀରେ ପ୍ରବେଶେ ।    ୨୧୫
ଅହଂକାରବଶେ ଚଳି    ବିପରୀତ ପଥେ,
ଆତ୍ମସାକ୍ଷାତ୍କାର ରହେ    ତାଠାରୁ ଦୂରସ୍ଥେ ।    ୨୧୬
ଅହଂକାରେ ପଡି ନର    ଜନ୍ମମୃତ୍ୟୁ ଫାଶେ
ବାରମ୍ବାର ଏ ସଂସାରେ    ଦେହ ଧରି ଆସେ ।    ୨୧୭
ମରଣରେ ମନ ପ୍ରାଣ    ଇନ୍ଦ୍ରିୟ ନିକର
ଭ୍ରମନ୍ତି ଏ ଜୀବ ସାଥେ    ଜନ୍ମ ଜନ୍ମାନ୍ତର ।    ୨୧୮
ଫଳାସକ୍ତଜନେ ହୁଏ    ପ୍ରାରବ୍ଧ ଉଦୟ,
ସ୍ୱର୍ଗନର୍କ ଆଦି ଲୋକେ    ବିଭ୍ରମେ ନିଶ୍ଚୟ ।    ୨୧୯
ଏହିପରି ବଦ୍ଧଜୀବ    ମୃତ୍ୟୁ କବଳିତି,
ପରମାତ୍ମସାକ୍ଷାତ୍କାର    ପଥରୁ ବଞ୍ଚିତ ।    ୨୨୦

ଲଲାଟେନ୍ଦୁ କବି ୨୦୧୮୧୧୧୫୦୪୨୫

ସ୍ମାର୍ଟ୍ ମହାଭାରତ୍ -୨୩/ତ୍ରୟୋବିଂଶ ବିସ୍ଫୋରଣ

ସନତ୍ସୁଜାତୀୟ - (ଗ)
_ସନତ୍ସୁଜାତ ଉବାଚ_

ରକ୍ଷା କେହି ନ କରନ୍ତି    କେବେ ପାପୀ ଜନେ,
ବିଶେଷେ ଯେ ଧର୍ମେ ରତ    ପାପ ରଖି ମନେ ।    ୨୨୧
ପକ୍ଷୀଶିଶୁ ଚଳେ ଯଥା    ଅଣ୍ଡା ଖୋଳ ତେଜି,
ଅନ୍ତକାଳେ ବେଦ ଯାନ୍ତି    ପାପୀଙ୍କେ ବରଜି ।    ୨୨୨
ନାନା ରୂପେ ପରମାତ୍ମା    ବ୍ୟକ୍ତ ଏ ଜଗତେ,
ତଥାପି ସେ ବିଲକ୍ଷଣ,    ଭିନ୍ନ ଏ ସମସ୍ତେ ।    ୨୨୩
ଚାନ୍ଦ୍ରାୟଣ ତପ, ଜ୍ୟୋତି-    ଷ୍ଟୋମ ଯଜ୍ଞମାନ,
ତାହା ପ୍ରାପ୍ତି ଲାଗି ବେଦ    କରନ୍ତି ବିଧାନ ।    ୨୨୪
ସେହି ପୁଣ୍ୟବଳେ କରି    ପାପର ସଂହାର
ଧର୍ମାଚାରୀ କରନ୍ତି ସେ    ବ୍ରହ୍ମ ସାକ୍ଷାତ୍କାର ।    ୨୨୫
ଏ ରୂପେ ଜ୍ଞାନରେ ସ୍ନାନେ    ଆତ୍ମାର ପ୍ରାପତି;
ଫଳେଚ୍ଛୁକୁ ପରଲୋକେ    ଫଳଭୋଗ ଗତି।    ୨୨୬
ଏ ଲୋକେ ତପସ୍ୟାଫଳ    ଭୋଗ ପରଲୋକେ,
ଫଳଭୋଗ ଶେଷେ ନର    ସେହି ଆବର୍ତ୍ତକେ ।    ୧୨୭
ତପେ ମଧ୍ୟ ସମ୍ଭବ ଏ    ବାରଗୋଟି ଦୋଷ:-
କାମ କ୍ରୋଧ ଲୋଭ ମୋହ    ସ୍ପୃହା ଅସନ୍ତୋଷ,    ୧୨୮
ନିର୍ଦ୍ଦୟତା ଅଭିମାନ    ନିନ୍ଦା ଈର୍ଷ୍ୟା ଶୋକ,
ଅସୂୟା, ଏ ତ୍ୟାଜ୍ୟ ଦୋଷ    ବାରଟି ପ୍ରମୁଖ ।    ୧୨୯

ବାଘ ଯଥା ଛାଗ ପିଛା    ଥାଏ ଅନୁସରି
ଦୋଷ ଥାନ୍ତି ପଛେପଛେ    ଛିଦ୍ର ଖୋଜିକରି ।    ୨୩୦
ଲଲାଟେନ୍ଦୁ କବି ୨୦୧୮୧୧

ସ୍ମାର୍ଟ୍ ମହାଭାରତ୍ -୨୪/ଚତୁର୍ବିଂଶ ବିସ୍ଫୋରଣ

ସନତ୍ସୁଜାତୀୟ - (ଘ)

_ସନତ୍ସୁଜାତ ଉବାଚ—_
ଦମ, ତ୍ୟାଗ, ଆତ୍ମକଲ୍ୟା-    ଣରେ ଅପ୍ରମାଦୀ
ଅମୃତତ୍ୱ ପ୍ରାପ୍ତି ନିଷ୍ଠେ    ସେ ପାରେ ସମ୍ପାଦି ।    ୨୩୧
ବ୍ରାହ୍ମଣର ମନେ ରଖ    ବାରଗୋଟି ବ୍ରତ୍ୟ:
ଇନ୍ଦ୍ରିୟନିଗ୍ରହ ଦାନ    ଧୈର୍ଯ୍ୟ ଲଜ୍ଜା ସତ୍ୟ,    ୨୩୨
ମତ୍ସରବର୍ଜନ ଧର୍ମ    ସହନଶୀଳତା
ତପ ଯଜ୍ଞ ଶାସ୍ତ୍ରଜ୍ଞାନ    ଅଦୋଷଦର୍ଶୀତା ।    ୨୩୩
ଏଥୁ ତିନି,ଦୁଇ ଅବା    ଏକ ଅଛି ଯାର,
ଧୀରେ ଧୀରେ ସେହି    କରେ ଅମୃତ ଆହାର ।    ୨୩୪
ଏହି ଅଠରଟି ଦୋଷ    ଦମରେ ତେଜିବ:
ଗୁଣରେ ଦୋଷ- ଦର୍ଶନ,    କ୍ରୋଧ, ହିଂସା, ଲୋଭ,    ୨୩୫
ଭୋଗେଚ୍ଛା,ଚୁଗୁଲୀ,ଢାମ,    ତୃଷ୍ଣା,ଲୋଭ, ଶୋକ,
ସଦା ଧନ ଅରଜନ,    ବେଶି ବକବକ,    ୨୩୬
ଅକର୍ତ୍ତବ୍ୟ-କର୍ତ୍ତବ୍ୟରେ    ବିପରୀତ ଜ୍ଞାନ,
ନିଜକୁ ବଡ ମାନ୍ୟତା,    ସଂତାପ, ଚିନ୍ତନ,    ୨୩୭
ନାରୀସମ୍ବନ୍ଧୀ କାମନ,    ଅଧିକ ଭାଷଣ,
ଏସବୁ ତେଜିଲେ ସପୁ-    ରୁଷରେ ଗଣନ ।    ୨୩୮
ଶୁଣ ଏବେ ଷଡବିଧ    ତ୍ୟାଗ ଶ୍ରେଷ୍ଠତମ,
ଲକ୍ଷ୍ମୀ ପ୍ରାପ୍ତି ଉତ୍ଫୁଲ୍ଲିତ    ନକରୁ: ପ୍ରଥମ ।    ୨୩୯
ହୋମ ଯଜ୍ଞ ପୁଷ୍କରିଣୀ    କୂପ ଉଦ୍ୟାନରେ,
ଅର୍ଥ ବିନିଯୋଗ ନାମ    ତ୍ୟାଗ ଦ୍ୱିତୀୟରେ ।    ୨୪୦
ତୃତୀୟେ କାମନା ତେଜି    ହେବ ବୀତରାଗ,
ଅଘଟଣେ ସ୍ଥିର ମତି    ଆନ ଏକ ତ୍ୟାଗ ।    ୨୪୧
ପଞ୍ଚମେ ଅଭୀଷ୍ଟ କେବେ    ନ କର ଯାଚନ,
ଷଷ୍ଠ ତ୍ୟାଗ ସତ୍ପାତ୍ରେ ହିଁ    କରୁ ଥିବ ଦାନ ।    ୨୪୨

ଲଲାଟେନ୍ଦୁ କବି    ୨୦୧୮୧୧୨୪

ସ୍ମାର୍ଟ୍ ମହାଭାରତ୍ ମାହାତ୍ମ୍ୟ
(ବା) ଅତିବିଶେଷ କଥନ

ମଣିଷରୁ ବ୍ୟଙ୍ଗକବି

ସ୍ମାର୍ଟ୍ ମହାଭାରତ୍‌ଟା    ପଢିବାର କଥା,
ଅଛି ତହିଁ ମିଠା ଖଟା    ଖୁସିର ବ୍ୟବସ୍ଥା |    ଓ
ପଢିଲେ ମହାଭାରତ    କଳି କିଏ କୁହେ?
ସ୍ମାର୍ଟ୍ ଲେଖା ପଢିଛ ତ,    କୁହ ଦେଖି ଛୁଏ !    ୨୪୩
ପଢିବ ଘଟଣାକ୍ରମ    ସବୁ ହସି ହସି,
ପଢ ବିନା ପରିଶ୍ରମ,    ଦେଉଛି ପରଶି ।    ୨୪୪
ଯଦି କେବେ ବଢି ବଢି    ବହି ହେଇ ଯାଏ,
ସକାଳୁ ବସିବ ପଢି    ସଞ୍ଜ ହେବା ଯାଏ ।    ୨୪୫
ଖୁସିରେ କରିବ ପାଠ,    କିଆଁ ହେବ କଳି,
କେହି ନ ମାରିବେ ଛାଟ    ପଢ ନାହିଁ ବୋଲି ।    ୨୪୬
ମହାବଳୀମହାଶାଳୀ-    ବ୍ୟଙ୍ଗ ଲେଖିଦେଲି !
ବାଘ ଦେଖି କରତାଳି    ଯେହ୍ନେ ମାରେ ଛେଳି ।    ୨୪୭

କି ଲାଗି ଡରିବି ମିଛେ    ମହାଭାରତକୁ?
ଲାଗି ଲାଗି ଆଗେ ପିଛେ    ଲେଖିବି ତାହାକୁ ।    ୨୪୮
ଦେଖି ଦେଖି କହେ ବେବି -    ଅଙ୍କଲ୍ ଏ କି କଲ?
ମଣିଷରୁ ବ୍ୟଙ୍ଗକବି    ସିଧା ହେଇ ଗଲ?    ୨୪୯

ଲଲାଟେନ୍ଦୁ କବି    ୨୦୧୯୧୦୦୭୧୧୩୦

ସ୍ମାର୍ଟ୍ ମହାଭାରତ୍ —୨୫/ପଞ୍ଚବିଂଶ ବିସ୍ଫୋରଣ

## ଧୃତରାଷ୍ଟ୍ର ଭାଳେ

ଉପକ୍ରମ:-
କୌରବେ ହାରିବେ ଶୁଣି    ଧୃତରାଷ୍ଟ୍ର ଭାଳେ,
କେଉଁପରି ସାଥୀ ୟାଙ୍କ    ଅଛନ୍ତି କପାଳେ ।
ମେଞ୍ଚଡଟା ଭାସିଆସି    ମାଠିଆ ଭିତରେ,
କହୁଛି ଜୀବନ ଦବ    ଦୁରୁଯୁ ହିତରେ ।    ୨୫୦
ରଣାଙ୍ଗନେ ଶତପୁତ୍ର    ରକ୍ତ କୁଡୁବୁଡୁ,
ମଜା ଦେଖୁଅଛି ଶଳା    ଶକୁନି ଲେଙ୍ଗୁଡୁ ।    ୨୫୧
ପଇସା ଦଉଛି ବାହି    ରଜା ଧୃତରାଷ୍ଟ୍ର,
ପାର୍ଥକୁ କରୁଛି ଗେହ୍ଲା    ବୁଢା ଦ୍ରୋଣ ମାଷ୍ଟ୍ର !    ୨୫୨
ସେ କଥା ଭାଳୁଛି ମୁହିଁ    ଅନ୍ଧ ଦୁର୍ଯୁବାପ,
ପୁଅ ଜଗୁ କରିବା କି    ଏତେ ବଡ ପାପ?    ୨୫୩
ଧୁଣାଟା ବି ଦୁର୍ଯୁ ସାଥେ    ଖାଉଅଛି ଗାଳି,
ଭୀମ ବାଡେଇଲେ ଭୀଷ୍ମ,    ଦ୍ରୋଣ ଦେବେ ତାଳି ।    ୨୫୪
ସେଲାଗି ପାଣ୍ଡବେ ପୁତ୍ର    ଦେଲା ବିଷଲଡୁ,
ଖସିଗଲେ ଭାଗ୍ୟ ବଳେ    ନିଆଁ ଚଢୁ ଚଢୁ !    ୨୫୫
କୋଟା ଖାଇ ବିଦୁରିଆ    ଏତେ ବେପରୁଆ,
କୌରବେ ନିନ୍ଦୁଛି ମୂର୍ଖ    ହାଡିଆଣୀ ଛୁଆ ।    ୨୫୬
ଅଷାଣ୍ଢୁଆ ଏଷ୍ଟି ଛୁଆ    ଆମ ଏକଲବ୍ୟ,
ଆଙ୍ଗୁଠି ତା' ହରିବା କି    ମାଷ୍ଟ୍ରର କର୍ତ୍ତବ୍ୟ?    ୨୫୭
"ଅହିଂସା ପରମୋ ଧର୍ମଃ"    ଶାସ୍ତ୍ରୋକ୍ତି ନିଖୁଣ,
ଆଙ୍ଗୁଠି ଲୁଟିଲା ଦ୍ରୋଣ,    କେମିତି ବାହ୍ମଣ ?    ୨୫୮
ଲଲାଟେନ୍ଦୁ କବି
୨୦୧୯୦୮୧୯୨୨୩୦

ସ୍ମାର୍ଟ୍ ମହାଭାରତ୍ —୨୬/ଷଡ୍‌ବିଂଶ ବିସ୍ଫୋରଣ

## ଦ୍ରୌପଦୀ-କିଡ୍ନାପିଂ

ଧୌମ୍ୟମୁନି ଆଜ୍ଞା ଘେନି    ପାଣ୍ଡୁପୁତ୍ରଚୟ,
ଅରଣ୍ୟେ ଚଳିଲେ ଦେଇ    କୃଷ୍ଣାକୁ ଅଭୟ ।    ୨୫୯
ସେ କାଳେ ସିନ୍ଧୁନରେଶ    ବୃଦ୍ଧକ୍ଷତ୍ରସୁତ,
ଆସୁଥିଲା ଜୟଦ୍ରଥ    ପାଟଆଟଯୁତ ।    ୨୬୦
ସହସା କାମ୍ୟକ ବନେ    ପଡିଲା ନୟନେ,
ଉଦାସିନୀ ଯାଜ୍ଞସେନୀ    କୁଟୀର ଅଙ୍ଗନେ ।    ୨୬୧
ଭୁଲିଲା ତତ୍କାଳ ନିଜ    ଶାଲ୍ୱଦେଶଯାତ୍ରା,
ଶ୍ୟାମଳୀ ପାଞ୍ଚାଳୀ ପ୍ରେମ    ହେଲା ଅତିମାତ୍ରା ।    ୨୬୨
ଭାଳେ ଜିୟଦ୍ରଥ ବାଳୀ    ହେଉ ପଛେ କାଳୀ,
ଚୋଳିବି ଏ ଲଳନାକୁ,    ହୃଦ ଗଳାମାଳି ।    ୨୬୩
ପେଶିଲା ତା ପାଶେ ପ୍ରିୟ    ବନ୍ଧୁ କୋଟିକାସ୍ୟେ,
ଶୁଣିବାକୁ ପରିଚୟ    ତରୁଣୀର ଆସ୍ୟେ ।    ୨୬୪
କହିବାରେ ଅଭିପ୍ରାୟ    ମାଗି ପରିଚୟ,
ଦ୍ରୌପଦୀ କହୁଛି କରି    ସାହସ ସଞ୍ଚୟ,    ୨୬୫
ଶକ୍ତିର ଆକର ମୁହିଁ    ପତିବ୍ରତା ନାରୀ
ଦୁରାଗ୍ରହ କଲେ ନାଶ    ଯିବ ବନଚାରୀ ।    ୨୬୬

ରଜାଘର ଝିଅ ମୁ ବି   ରଜାଘର ବୋହୂ,
ଡାକ, ପରଶିବି ଅନ୍ନ,   ଦୋଷ ମୋର ନୋହୁ ।   ୨୬୭
ଜୟଦ୍ରଥ ମଦମତ୍ତ   ପାଇ ଆମନ୍ତ୍ରଣ,
ଆଶ୍ରମେ ପ୍ରବେଶି କଲା   ପ୍ରେମ ପ୍ରକରଣ ।   ୨୬୮
ଜେବୁଝାଇ କହିଲା ଶୁଣ   ଦ୍ରୁପଦନନ୍ଦିନି !
କି ଆଶେ ଭିକ୍ଷୁଙ୍କ ପାଶେ   ପଡିଛ ବନ୍ଦିନୀ ?   ୨୬୯
ଦେଖ ଏ ପାଣ୍ଡବେ ଏବେ   ସଂପୂର୍ଣ୍ଣ ନିର୍ଦ୍ଧନ,
ଏଙ୍କୁ ରାଜ୍ୟୁ ବିତାଡନ   କଲା ଦୁର୍ଯ୍ୟୋଧନ ।   ୨୭୦
ଧନ ଗଲା ଜନ ଗଲା,   ଗଲା ଅନ୍ତଃପୁର,
ଗୋଧନ ବଦଳେ ଏବେ   ପାଳିବେ କୁକୁର ।   ୨୭୧
ଏହାଙ୍କୁ ସେବୁଛ କିଆଁ   ଲଗାଇ ଶକତି?
ୟାଙ୍କ ଭାଗ୍ୟେ ଲେଖା ଅଛି   ପ୍ରବଳ ଦୁର୍ଗତି !   ୨୭୨
ସୌବୀର ସହିତ ହେବ   ସିନ୍ଧୁଦେଶ ରାଣୀ,
ରଥେ ବସି ଚାଲ ଖସି,   ଧର ମୋର ପାଣି ।   ୨୭୩
ମହା ସୁଖେ ମୋର ପାଖେ   ନଣନ୍ଦ ଦୁଃଶିଳା,
ୟାଙ୍କ ପାଶେ କେଉଁ ଆଶେ   ନେଉଅଛ କୀଳା ?   ୨୭୪
ସୁନ୍ଦରି ହେ ! ଭରି ଥାଉଁ   ରୂପ ଯଉବନ,
ୟାଙ୍କ ପାଶେ ଭିକ୍ଷୁ ବେଶେ   ହାରୁଛ ଜୀବନ !   ୨୭୫
ଜାଳିଦବ ଯୁବାମନ   ହୁଅ ପଛେ କାଳୀ,
ମୋ ସାଥିରେ ଆସ ବାଳୀ   ନେବି ରଥ ଚାଳି ।   ୨୭୬
ଜୟଦ୍ରଥ ସ୍ପର୍ଦ୍ଧା ଦେଖି   ଭାଳୁଛି ପାଞ୍ଚାଳୀ,
ଗରିବ ମାଇପ ବୋଲି   ଏହାର ମୁଁ ଶାଳୀ ?   ୨୭୭
ପାଞ୍ଚଟି ଶାର୍ଦ୍ଦୁଳେ ଜଳ   ପିଆଏ ଯେ ଛେଳି,
ଫମ୍ପାମାଠିଆର ସାଥେ   କରିବ କି କେଳି?   ୨୮୮
ଏହା ବୋଲି ମନ ଖୋଲି   କଲାରେ ଭର୍ତ୍ସନା
ବଜ୍ରାହତ ଜୟଦ୍ରଥ   ହେଲା କ୍ରୁଦ୍ଧମନା ।   ୨୭୯
ଚାଲିଲା ଦୁହିଙ୍କ ମଧ୍ୟେ   ବଳ କଷା କଷି,
ଅବଳା ପାଞ୍ଚାଳୀ କିନ୍ତୁ   ନ ପାରିଲା ଖସି ।   ୨୮୦
ଜୟଦ୍ରଥ ଭିଡି ତାର   ଓଢଣାଠୁ ଶାଢୀ,
ଦ୍ରୌପଦୀକି ଧରି ନେଲା   ଘୋଷାଡି ଘୋଷାଡି,   ୨୮୧
ଛୁଟିଲା ସ୍ୟନ୍ଦନ ତହୁଁ   ପବନ ପରାୟେ,
ପଢିବ ତା ପର କଥା   ଅପର ଅଧ୍ୟାୟେ ।   ୨୮୨

ଲଲାଟେନ୍ଦୁ କବି   ୨୦୧୯୦୮୨୧୦୨୫୦

ସ୍ମାର୍ଟ୍ ମହାଭାରତ୍ —୨୭/ସପ୍ତବିଂଶ ବିସ୍ଫୋରଣ

ଦ୍ରୌପଦୀ-କିଡ୍ନାପିଂର ଫଳ

ପାଠକେ ତୁମ୍ଭକେ ଶୁଣ   କିଡ୍ନାପିଂର ଫଳ,
କିଲାଗି ତାହାର ନାରୀ   ଯାର ବେଶି ବଳ ।   ୨୮୩
ଧୌମ୍ୟମୁନି ମହାଧ୍ୱନି   ଛାଡିଲେ ବିକଳେ,
ଅରଣ୍ୟରୁ ଆସ ବେଗେ   ପାଣ୍ଡବ ସକଳେ —
ଦୂରେ ଜାଣି ଭୀମାର୍ଜୁନୀ   ଯୁଧି ସହ ନକୁ
ନଣନ୍ଦେଇ ଟେକି ନେଲା   ଶଳାଭାଉଜକୁ ।   ୨୮୫
ଏବେଏବେ ଜୟଦ୍ରଥ   ରଥ ଦଉଡାଇ,
ହଡପ୍ କରି ପାଞ୍ଚାଳୀକି   ନେଇଛି ଉଡାଇ ।   ୨୮୬
ଅସ୍ତ୍ର ଧରି ଯୁଦ୍ଧ କରି   ଧରି ଆଣ ତାକୁ,
ବେଳ ନାହିଁ ଭାଇ ଭାଇ   ଗପ ମାରିବାକୁ ।   ୨୮୭
୨୦୧୯୦୮୨୨୨୦୦୮
ଶୁଣି ଡାକ ଭାଇ ଯାକ   କହନ୍ତି ବିଚାରେ,
ପାଞ୍ଚାଳୀ ଯାଇ ନଥିବ   ଆପଣା ଇଚ୍ଛାରେ ।   ୨୮୮
ଜାଣେ ନାରୀ କେତେ ଭାରୀ   ପଡିବ ଗଦାରି,
ନିଜେ ଯାଇ ନଥିବ ସେ,   ଆଣିବା ଉଦ୍ଧାରି ।   ୨୮୯

ବୁଦ୍ଧି ଥିଲେ ଜଦୁ ତାକୁ ଆଶ୍ରମେ ଛାଡି ଯା,
ଗୋଟେବୋଲି ଆମର ସେ କମନ ଭାରିଯା ୨୯୦
ଏହା ବୋଲି ସର୍ବେ ମିଳି ଲେଉଟି ଆଶ୍ରମେ
ସଖିଧାତ୍ରେୟୀଠୁ ବାର୍ତ୍ତା ଶୁଣିଲେ ପ୍ରଥମେ ୨୯୧
ଇନ୍ଦ୍ରସେନ ସାରଥୀକି ବଖାଣିଲା ଦାସୀ,
ଅଳ୍ପଦୂରେ ଥିବେ ସବୁ, ଧାଅଁ ବନବାସୀ । ୨୯୨
ଖୋଜି ଧରିନେଲେ ଅସ୍ତ୍ର ପଞ୍ଚ କୁନ୍ତୀସୁତ,
ପହଞ୍ଚିଲେ ରଥ ପାଶେ କ୍ରୋଧରେ ବହୁତ । ୨୯୩
ଅର୍ଜୁନ ନକୁଳ ସହ ସହଦେବ ନକୁ,
ଜୟଦ୍ରଥେ ଡାକଦେଲେ କରି ରକ୍ତଚକ୍ଷୁ । ୨୯୪
ଶିବି ସିନ୍ଧୁଦେଶ ତଥା ସୌବୀର ସୁବୀରେ
ବୀରଭୀମାର୍ଜୁନ ଭୟେ କମ୍ପିଲେ ଅଧୀରେ ୨୯୫
ଜୟଦ୍ରଥ ବାହିନୀର ଅଗ୍ରଭାଗ ସୈନ୍ୟ
ମଧ୍ୟରୁ ଚଉଦ ମାରି ଦେଲା ଭୀମସେନ । ୨୯୬
ଭୀମପରେ ବରଷିଲା ଶତଶତ ଶର,
ନାଛିଲା ପାଞ୍ଚଶ ରଥୀ ପାର୍ଥ ଧନୁର୍ଦ୍ଧର । ୨୯୭
ଯୁଧିଷ୍ଠିର ଶହେ ବୀର ମାରି ଗଡାଇଲେ,
ସହ-ନକୁଳ ଅନେକ ମାରି ଘୌଡାଇଲେ । ୨୯୮
ତ୍ରିଗର୍ତ୍ତ ରାଜନ କ୍ରୋଧେ ଧରି ଧନୁଶର,
ମାରି ଦେଲା ଚାରି ଘୋଡା ଯୁଧିଷ୍ଠିରଙ୍କର । ୨୯୯
ଏହା ଦେଖି ଯୁଧିଷ୍ଠିର ସ୍ଥିର ମତି ଧରି,
ଛାତି ଚିରିଦେଲେ ତାର ଶର ବର୍ଷା କରି । ୩୦୦
ଏପରି ସହସ୍ର ବୀର ଦେବାରେ ଜୀବନ,
ଭୟେ ଜୟଦ୍ରଥ ଧାଇଁ ପଳାଇଲା ବନ । ୩୦୧
ଯୁଧିଷ୍ଠିର ଧର୍ମବୀର ବୁଝାଇଲେ ଭାଇ
ଋମାରନା ତାହାକୁ ଭଗ୍ନୀ ଦୁଃଶିଳାର ପାଇଁ । ୩୦୨
ବଡମାଆଙ୍କର ସେହି ଦୁଷ୍ଟଟି ପା' ହ୍ଵାଇଁ,
ବଡମା ଖାତିରେ ତାର ପ୍ରାଣ ନିଅ ନାହିଁ । ୩୦୩
ଭୀମାର୍ଜୁନ ଜୟଦ୍ରଥ ପଛେ ଧାଇଁ ଧାଇଁ
ଶରମାରି ତା ଘୋଡାକୁ କରି ଧରାଶାୟୀ ୩୦୪
ପିଠିରେ ତା ବରଷିଲେ ପ୍ରଚଣ୍ଡ ପ୍ରହାର,
ପିଟିପିଟି ଆସି କଲେ ଦ୍ରୌପଦୀ ଉଦ୍ଧାର । ୩୦୫
୨୦୧୯୦୮୨୮୦୨୫୦୮

ସ୍ମାର୍ଟ୍ ମହାଭାରତ୍ —୨୮/ଅଷ୍ଟାବିଂଶ ବିସ୍ଫୋରଣ
କୃଷ୍ଣଙ୍କୁ ଗାନ୍ଧାରୀର ମୁହଁତୋଡ୍ ଜବାବ୍

ସୁବଳନନ୍ଦିନୀ ହସ୍ତିନାବନ୍ଦିନୀ
ଧୃତରାଷ୍ଟ୍ର ପ୍ରଣୟିନୀ,
ଶତପୁତ୍ର ହାରି ଭାଳୁଛି ବିଚାରୀ
ସତ୍ୟଧର୍ମନିବାସିନୀ । ୩୦୬
ଏ ମହାସମରେ ମହୀକି ଭ୍ରମରେ
ରଖିଲେ ଜଗତପତି,
ପାଣ୍ଡବକୁଳର ସବୁ କୌଶଳର
ମୂଳ ଏଙ୍କ ଛଳ ମତି । ୩୦୭
ଏକଲବ୍ୟ ପାଇଁ ଦ୍ରୋଣମୁଣ୍ଡ ଖାଇ
ବିଗାଡିଲେ ମାୟା ବଳେ,
ତେଣୁ ସିନା ଦ୍ରୋଣ କରିଲେ ହରଣ
ଯୁଦ୍ଧାଙ୍ଗୁଷ୍ଠି ତାଙ୍କ ଛଳେ; ୩୦୮
ପାର୍ଥ କୁ ଶିଖାଇ ଡୁପ୍ଲିକେଟ୍ ସଜାଇ
ଭୀଷ୍ମଠି କଲେ ପ୍ରେରଣ,
ଖୁଡ୍.ତାଣ୍ଟରେ ଠକି ଚାଲବାଜି ରଖି
ସେ କଲା ବାଣହରଣ । ୩୦୯

ଜୟଦ୍ରଥ ଲାଗି          ଠକିବାକୁ ଟାଙ୍ଗି
          ଶୂନ୍ୟେ ସୁଦର୍ଶନ ଚକ୍ର
ଅର୍ଜୁନେ ଶିଖାଇ          ଜୋଇଁକି ମରାଇ
          ଯୁଦ୍ଧ ଗତି କଲେ ବକ୍ର     ୩୧୦
ଧର୍ମପୁତ୍ରଟାକୁ          ମିଛ କହିବାକୁ
          ଦେଇ ନାନା ଉସୁକାଣି,
ଅସତ୍ୟ ଶୁଣାଇ          ଧୃଷ୍ଟକୁ ପଠାଇ
          ଦ୍ରୋଣ ମଥା ଦେଲେ ହାଣି     ୩୧୧
ଶିଖାଇ ଭୀମକୁ          ମୋ ଦୁର୍ଯ୍ୟୋଧନକୁ
          ଜାନୁରେ ମରାଇ ମାଡ,
ବିନା ରେଫରୀରେ          ସରୋବରତୀରେ
          ଭଙ୍ଗାଇଲେ ଜାନୁହାଡ     ୩୧୨
ଯୁଦ୍ଧ ଶିଷ୍ଟାଚାର          ଭାଙ୍ଗି ବାରମ୍ବାର
          ଅସ୍ତ୍ରହୀନ କର୍ଣ୍ଣପରେ,
ପ୍ରତ୍ୟଞ୍ଚା ଚଢାଇ          ନାଛି ଦବା ପାଇଁ
          ଶିଖାଇଲେ ଧନୁର୍ଦ୍ଧରେ     ୩୧୩
ତାଗଡା ଲୁହାରେ          ଆମରି ଦୁଆରେ
          ଡୁପ୍ଲିକେଟ ଭୀମକୁ ରଖି
ତାର ଗଣ୍ଡିମୁଣ୍ଡ          କରିବାକୁ ଗୁଣ୍ଡ
          ଧୃତରାଷ୍ଟ୍ରେ ଦେଲେ ଠକି     ୩୧୪
ଏହିପରି ନାନା          କପଟର ବାନା
          ଉଡାଇ ମାଇଲେ ଚୂଳି,
ଏ ମହାସମର          ଦେଖିଲା ମାତର
          ଫାଉଲୁ ଆଉ ଗେଙ୍ଗୁଳି     ୩୧୫

ଲଲାଟେନ୍ଦୁ କବି     ୨୦୧୮୧୨୧୯୦୩୩

ସ୍ମାର୍ଟ୍ ମହାଭାରତ୍ —୨୯/ଉନତ୍ରିଂଶ ବିସ୍ଫୋରଣ

## ଚିତ୍ରାଙ୍ଗଦ ବନାମ ଚିତ୍ରାଙ୍ଗଦ ଯୁଦ୍ଧ

ଚିତ୍ରାଙ୍ଗଦେ ଚିତ୍ରାଙ୍ଗଦ          ଯୁଦ୍ଧ କଥା ଶୁଣ,
ଏକ ହାତେ ଆନ ହତ,          କହିବି ନିଖୁଣ ।     ୩୧୬
ସତ୍ୟବତୀଗର୍ଭଜାତ          ଦୁଇଟି ସନ୍ତାନ
ସାନଟି ବିଚିତ୍ରବୀର୍ଯ୍ୟ          ଚିତ୍ରାଙ୍ଗଦ ଆନ ।     ୩୧୭
ଶାନ୍ତନୁ ବୁଢାକୁ ଭାର୍ଯ୍ୟା          ଟୋକୀ ସତ୍ୟବତୀ,
ଛୁଆ ଛୋଟ, ବୁଢାରାଜା          ଗଲା ଯମ କତି ।     ୩୧୮
ମହାବଳୀ ପୁତ୍ରଦ୍ୱୟ          ଯୁଦ୍ଧ ବିଶାରଦ,
ଦେବାସୁରନରେ ହେୟ          ମଣେ ଚିତ୍ରାଙ୍ଗଦ ।     ୩୧୯
ଏ ଦେଖି ଗନ୍ଧର୍ବରାଜ:          ସେ ବି ଚିତ୍ରାଙ୍ଗଦ,   (ଏକା ନାମ)
ଭାଳେ ମୁଁ ନାଛିବି ଆଜ          ଏ ଥିଲେ ବିପଦ ।     ୩୨୦
ଚିତ୍ରାଙ୍ଗଦ ମାୟାବନ୍ତ          ମହା ବଳଶାଳୀ,
ତାଠାରୁ ଶାନ୍ତନୁସୁତ          ଜିତନ୍ତା କି ଭଳି ?     ୩୨୧
ଗନ୍ଧର୍ବର ଲଲକାରେ          ନର ଚିତ୍ରାଙ୍ଗଦ
କୁରୁକ୍ଷେତ୍ର ପଡିଆରେ          କଲା ପ୍ରତିରୋଧ ।     ୩୨୨
ଲାଗିଲା ମହାସମର          ତିନି ବର୍ଷ ଧରି,
ଶେଷେ ଶାନ୍ତନୁକୁମର          ଯୁଦ୍ଧେ ଗଲା ମରି ।     ୩୨୩
ଭାଇର ଅନ୍ତ୍ୟେଷ୍ଟି କରି          ଭୀଷ୍ମ ଦେବବ୍ରତ,
ଦେଲେ ବିଚିତ୍ରକୁ ଧରି          ରାଜାର ଶପଥ ।     ୩୨୪
ବିଚିତ୍ରବୀର୍ଯ୍ୟଟା ମଧ          ଥିଲା ନାବାଳକ,
ରବରଷ୍ଟାମ୍ପ୍ ରଜା, ଭୀଷ୍ମ          ତା ଅଭିଭାବକ ।     ୩୨୫
କାଶୀନୃପତି କନ୍ୟକା          ଖଞ୍ଜିଲେ ତା ସାଥେ,
ଅମ୍ବିକା ଓ ଅମ୍ବାଳିକା          ଯୌବନ ଆସନ୍ତେ ।     ୩୨୬

ଯୌବନର ଉନ୍ମାଦନେ    ସାତ ବର୍ଷ ଧରି
କାଟିବାରେ ରାତି ଦିନ    ନାରୀ ସୁଖ କରି    ୩୨୭
ବିଚିତ୍ରବୀର୍ଯ୍ୟକୁ ହେଲା    କି ବିଚିତ୍ର ରୋଗ,
ବୈଦ୍ଯବିଦ୍ୟା ସବୁ ଫେଲ୍,    ସରିଗଲା ଭୋଗ ।    ୩୨୮
ଅମ୍ବିକାକୁ ଅମ୍ବାଳିକା    ଦୁହେଁ ନିରପତ୍ୟ,
ଦେବି ପର ଆଖ୍ୟାୟିକା    ଗରଭ ଉଦୟ ୩୨୯
କେଉଁଭାବେ କଲେ ବୁଢୀ    ଶାଶୁର ଆଦେଶେ:
ପାଣ୍ଡୁଧୃତରାଷ୍ଟ୍ର ଯୋଡି,    କହିବି ବିଶେଷେ ।    ୩୩୦

ଲଲାଟେନ୍ଦୁ କବି    ୨୦୧୯୦୯୨୪୧୬୪୯

ସ୍ମାର୍ଟ୍ ମହାଭାରତ୍ - ୩୦/ତ୍ରିଂଶ ବିସ୍ଫୋରଣ
ଧୃତରାଷ୍ଟ୍ର ପାଣ୍ଡୁ ବିଦୁରଙ୍କ ଜନ୍ମ

ବିଦୁ ପାଣ୍ଡୁ ଧୃତରାଷ୍ଟ୍ର କଥା କହି ଦେବି,
ହସ୍ତିନାର ତିନି ଶ୍ରେଷ୍ଠ କ୍ୟୁଟ୍ କ୍ୟୁଟ୍ ବେବି ।
.
ବୀଚିତ୍ରବୀର୍ଯ୍ୟ ମରଣ    କିଛି ଦିନ ପରେ
ସତ୍ୟବତୀ କହେ ଭୀଷ୍ମ    କଥା ଶୁଣ ଥରେ ।    ୩୩୧
ଅମ୍ବାଳିକା ନିଃସନ୍ତାନ,    ତା ସାଥେ ଅମ୍ବିକା,
ହସ୍ତିନାର ସିଂହାସନ    ନିଃଶୂନ୍ୟ ଅବିକା !    ୩୩୨
ପ୍ରତିଜ୍ଞାକୁ ଗୁଳି ମାର,    ସିଂହାସନ ଥୁଆ,
ଅମ୍ବିକା ଅମ୍ବାଳିକାର    ଉପୁଜାଅ ଛୁଆ ।    ୩୩୩
ଭବିଷ୍ୟତ ରାଜବଂଶେ    ନ ରହିଲେ ପୁତ୍ର,
ଭାରତ ରାଜ୍ୟର ଶେଷେ    ଛିଡି ଯିବ ସୂତ୍ର !    ୩୩୪
ଶୀଘ୍ର ସିଂହାସନଟିକୁ    କର ଆରୋହଣ,
ରାଣୀ କର ସେ ଦୁହିଁଙ୍କୁ,    ଭାଙ୍ଗି ଦିଅ ପଣ ।    ୩୩୫
କହେ ଭୀଷ୍ମ ସବୁ ଶୁଣି -    ମାନି ତ ହବନି,
ଶପଥ ଭାଙ୍ଗିବି ପୁଣି    କି ଭାବେ ଜନନୀ ?    ୩୩୬
ଆକାଶ ବରଜି ପାରେ    ତା ଧର୍ମ: ଶବଦ,
ବତାସଠୁ ହଜି ପାରେ    ପରଶ-ସମ୍ପଦ, ।    ୩୩୭
ଅଗ୍ନି ପଛେ କରୁ ତ୍ୟାଗ    ତାର ରୂପ-ଗୁଣ
ରସ ଛାଡି ଜଳ ଭାଗ    ହେଉ ନିଷ୍କରୁଣ, ।    ୩୩୮
ପୃଥିବୀ ବରଜୁ ତାର    ସବୁ ତକ ଗନ୍ଧ,
ଭୀଷ୍ମ ନ ମାନିବ ହାର,    ସେ ପ୍ରତିଜ୍ଞାବଦ୍ଧ ।    ୩୩୯
ନାରୀ କି ବରିବି ମିଛେ,    କି ହେବ ମୋ ଛୁଆ,
ବ୍ୟାସନନା ମଙ୍ଗୁ, ନିଶ୍ଚେ    ବଂଶରକ୍ଷା ଥୁଆ ।    ୩୪୦
ନ ବୁଡିବ ରାଜବଂଶ,    ରହିବ ତୋ କଥା,
ରୋପିବା ନନାଙ୍କ ଅଂଶ,    ଏ ହେଉ ବ୍ୟବସ୍ଥା ।    ୩୪୧
ଏ କଥାରେ ଏକମନା    ହେଲେ ସତ୍ୟବତୀ,
ଭୀଷ୍ମ କହେ ବ୍ୟାସନନା    ଆସ ମାଆ କତି ।    ୩୪୨
ସେ ଆସନ୍ତେ ସତ୍ୟବତୀ    କହିଲେ ବସାଇ,
ଆର୍ଜେଣ୍ଟିଆ କାର୍ଯ୍ୟେ ଅତି    ଆଣିଛି ଡକାଇ ।    ୩୪୩
କୁରୁ ବଂଶ ଦିଶିଲାଣି    ବୁଡି ଗଲା ପରି
ଘରେ ଥାଉଁ ସୁକଲ୍ୟାଣୀ    ଦୁଇଟି ସୁନ୍ଦରୀ ।    ୩୪୪
ବସ ଦେବି ସେ ଖଟରେ,    ପାନ ଚୂନ ଗୁଆ,
ସେ ଦୁଇ ବୋହୂ ପେଟରେ    ରୋପି ଦିଅ ଛୁଆ ।    ୩୪୫
ବ୍ୟାସ କହନ୍ତି ଦି ବୋହୂ    କୁହ ଥିବେ ରେଡି,
ନ ଡରିବେ, ପ୍ଲାନ୍ ନୋହୁ    ଅରୁଚି ଖେଚେଡି ।    ୩୪୬
ପ୍ରଥମେ ଚଳିଲେ ବ୍ୟାସ    ଅମ୍ବିକା ନିବାସେ
ଦେଖି ଆଙ୍କ ରୂପ, ବାସ    ସେ ପଡିଲା ତ୍ରାସେ ।    ୩୪୭
ତାଙ୍କୁ କରି ଅତି ଭୟ    ନେତ୍ର ଦେଲା ବୁଜି,
ଅନ୍ଧ ହେଲା ଯେ ତନୟ    ସିଏ ଦେଲା ସୃଜି ।    ୩୪୮

ସହସ୍ର ହସ୍ତୀର ବଳ ହେଲା ତା ଶରୀରେ,
ମା' ଦୋଷେ ଦୃଷ୍ଟି କେବଳ ନ ହେଲା ଆଖିରେ । ୩୪୯
ହେଲା ଅମ୍ବାଳିକା ପାଳି ତା ପର ରାତିରେ,
ଛନକା ପଶିଲା, ବାଳୀ କମ୍ପିତା ଛାତିରେ । ୩୫୦
ଦେହ ହେଲା ବର୍ଣ୍ଣଚ୍ୟୁତ ମହର୍ଷି ଭୟରେ,
ରହିଲା ବିବର୍ଣ୍ଣ ସୁତ ଗର୍ଭ ଉଦୟରେ । ୩୫୧
ପାଣ୍ଡୁ ନାମେ ସେ କୁମାର, ବର୍ଣ୍ଣ ତାର ଫିକା
ସେ ଦୋଷ ଘେନିଲା ତାର ମାତା ଅମ୍ବାଳିକା । ୩୫୨
ଦେଖି ବରଷକ ପରେ ପୌତ୍ରଙ୍କ ବଦନ,
ପୁଣି ସତ୍ୟବତୀ କରେ ସଦ୍ୟ ନିବେଦନ: । ୩୫୩
ଅନ୍ଧ, ପାଣ୍ଡୁବର୍ଣ୍ଣ ଦିହ କେଉଁ ବୃକ୍ଷ ପୁଆ?
ଅମ୍ବିକାଠି କରି ଦିଅ କ୍ୟୁଟ୍ ଅନ୍ୟ ଛୁଆ । ୩୫୪
ତହୁଁ ପୁଣି ଗଲେ ଋଷି ଅମ୍ବିକା ନିକଟେ,
ରେଡି ଥିଲା ତାର ଦାସୀ ଏ ମହା ସଂକଟେ । ୩୫୫
କଲା ଅମ୍ବିକା ବଦଳେ ଆତ୍ମସମର୍ପଣ,
ତା ଗର୍ଭେ ମହର୍ଷି କଲେ ପୁତ୍ର ଆରୋପଣ । ୩୫୬
ସେହି ହେଲା ସୁସ୍ଥଦେହୀ ଅନୁଜ ବିଦୁର,
ଧର୍ମ ଜ୍ଞାତା, ଗୁଣୀ, ସ୍ନେହୀ, ବଚନ ମଧୁର । ୩୫୭
ଧର୍ମଦେବଙ୍କର ପୁଣି ଅଭିଶପ୍ତ ରୂପ,
ସେହି ଶାପ କଥା ଶୁଣି ବସିବ ନିଶ୍ଚୁପ । ୩୫୮
ଲଲାଟେନ୍ଦୁ କବି ୨୦୧୯୧୦୦୪୧୦୩୮

ସ୍ମାର୍ଟ୍ ମହାଭାରତ୍ – ୩୧/ଏକତ୍ରିଂଶ ବିସ୍ଫୋରଣ

## ଧର୍ମଦେବତାଙ୍କୁ ଅଭିଶାପ ଓ ବିଦୁର ଜନ୍ମ

ସ୍ମାର୍ଟ୍ ମହାଭାରତର ଅଧ୍ୟାୟ ଏକ୍ତ୍ରିଶେ
ପଢ଼ିବ ଧର୍ମଦେବତା କେଉଁ ପାପ ବଶେ
ଜନ୍ମିଲେ ବିଦୁରନାମେ ଶୂଦ୍ରପରିବାରେ,
ମାଣ୍ଡବ୍ୟ ଋଷି କି ଭାବେ ରହିଲେ କୀଳାରେ ॥
----- ----- ----- ----- ----- -----
ମାଣ୍ଡବ୍ୟ ନାମରେ ଜଣେ ଥିଲେ ମହାମୁନି
ସଧନା ନିମିତ୍ତ ବନେ ସେ ଥିଲେ ମଉନୀ । ୩୫୯
ରହୁଥିଲେ ଗିରିବରେ ପର୍ବତ କନ୍ଦରେ,
ପଡି ଗଲେ ସିଏ ଥରେ ତସ୍କର ଫନ୍ଦରେ: ୩୬୦
ଏକଦା ତସ୍କର ଦଳେ ଚୋରି ମାଲ ଧରି
ଖୋଜୁଥିବା ରକ୍ଷୀ-ବଳେ ପ୍ରାଣ ଭୟ କରି, ୩୬୧
ତପସ୍ୱୀଙ୍କ ଗୁମ୍ଫାଠାକୁ ଆସିଲେ ଦଉଡି,
ପଛେ ଥିଲେ ରକ୍ଷୀ ତାକୁ ଘଉଡି ଘଉଡି । ୩୬୨
ତପସ୍ୱୀଙ୍କ ଆଶ୍ରମରେ ପ୍ରବେଶି ଲୁଟେରା
ମାରୁ ଟିକ ସନ୍ତ୍ରମରେ ରଖି କଲେ ଡେରା । ୩୬୩
ଦେଖୁଥିଲେ ମୁନି ସବୁ ମଉନ ବ୍ରତରେ,
ହେଉ ଥିଲେ ପ୍ରଭୁ ପ୍ରଭୁ ବଡ ବିବ୍ରତରେ । ୩୬୪
କା ଆଗେ କହନ୍ତେ ପିଲେ, 'ପଡ ମୋ ପିଠିରେ,'
କହନ୍ତେ ବା ମୋବ୍ ଥିଲେ ସଂକ୍ଷିପ୍ତ ଚିଠିରେ । ୩୬୫
କଳିଯୁଗ ଆସିବାକୁ ଥିଲା ବହୁ ବର୍ଷ,
ବାଟ କାହିଁ କରିବାକୁ ମୌନ ପରାମର୍ଶ? ୩୬୬
ସେବେ ଥିଲା ଏ ସଭ୍ୟତା ଅନେକ ପଛୁଆ,
ପାଣି କଳ ଦୂର କଥା, ମିଳେ ନାହିଁ ଚୂଆ । ୩୬୭
ନ ଥିଲା ଲଣ୍ଠନ ସୁଦ୍ଧା, କି ବା ପାଇଖିନା,
ହଗୁଥିଲେ ଗୁଳ୍ମ ବୁଦା ମୂଳେ ମାଇକିନା । ୩୬୮
ସେହିଠାରେ ରଜା ରାଣୀ ରଜା ପୁଅ ଝିଅ
ହଗି ଦେଇ ନଈ ଧାରେ ଧୋଉଥିଲେ ଦିହ । ୩୬୯

ସେ ଯୁଗେ ମାଣ୍ଡବ୍ୟ କାହୁଁ     କରନ୍ତେ ସନ୍ଦେଶ ?
ରାଜରକ୍ଷୀ ଚାହୁଁ ଚାହୁଁ     କରିଲେ ପ୍ରବେଶ ।     ୩୭୦
ପଚାରିଲେ ମୁନି ବର     କିଛି ଦେଖିଲେ କି,
ଏହି ବାଟେ ଦଳେ ଚୋର     ପଳାଇ ଗଲେ କି ?     ୩୭୧
ନ କହିଲେ ମହାମୁନି     କିଛି ବି ଉତ୍ତରେ,
ସାଧନେ ରହିଲେ ତୁନି     ମଉନବ୍ରତରେ ।     ୩୭୨
ବାଧ ହେଇ ରକ୍ଷୀ ଜନ     ନେଲେ ଖାନ୍ତଲାସି,
ଧରିଲେ ଅମାପ ଧନ-     ସମ୍ପଦର ରାଶି ।     ୩୭୩
ଭାବିଲେ ଏ ମୁନି ସେହି     ଗେଙ୍ଗ୍ ର ଲିଡର,
ସଭିଙ୍କି ଘୋଷାରି ନେଇ     କରିଲେ ଭିତର ।     ୩୭୫
ଶୁଭୁ ଥିଲା ହୁଳହୁଳି,     ରାଜା ଦେଲେ ରାୟ:
ସଭିଙ୍କି ଚଢାଇ ଶୂଳୀ     ମାର ନିଃସହାୟ ।     ୩୭୬
ଶୂଳୀପରେ ଚଢାଇଲେ     ସଭିଙ୍କି ଘାତକେ,
ସଭାଜନେ ପଳାଇଲେ     ପରାଣ ଆତଙ୍କେ ।     ୩୭୭
ଚୋର ସିନା ଗଲେ ମରି,     ମୁନି ମଲେ ନାହିଁ,
ବଞ୍ଚିଲେ ମୌନ ଆଚରି     ତପୋବଳ ପାଇଁ ।     ୩୭୮
କିଛି ଦିନ ପରେ ଦେଖି     ଜୀବିତ ମାଣ୍ଡବ୍ୟ
ରାଜାଙ୍କୁ କହିଲେ ରକ୍ଷୀ,     ହୋଇ କିଂକର୍ତ୍ତବ୍ୟ ।     ୩୭୯
ତହୁଁ ରଜା ଭାବି ଗଲେ,     ଭୁଲ ହେଇ ଗଲା!
ସବୁ ଚୋର ମରି ଗଲେ     ଏ କିଆଁ ନ ମଲା !     ୩୮୦
ହେଇ ଏ ନଥିବ ଭଣ୍ଡ,     ଥିବ ପୁଣ୍ୟବଳ,
ନିକାଲି ସେ କୀଳା ଖଣ୍ଡ,     ବଞ୍ଚାଅ ଚଞ୍ଚଳ ।     ୩୮୧
ଶୂଳୀକୁ କିଙ୍କର ଧରି     ତଳେ ତ ଆଣିଲେ,
କୀଳାଟା କାଇଦା କରି     କାଢି ନ ପାରିଲେ ।     ୩୮୨
ଶୂଳୀ ଅଗ ହୁକ ପରି     ଥିଲା ଯା ଫର୍ମେସନ୍
ଏବେ ନା କାଢନ୍ତେ କରି     ମେଜର ଅପ୍ରେସନ୍ !     ୩୮୩
କୀଳାର ତ ହେଇ ଗଲା     ୱାନ୍ ୱେ ଟ୍ରାଫିକି,
କାଢି ହେବ କାହୁଁ ଭଲା     ବଙ୍କା ଅଗ ଝିଙ୍କି ?     ୩୮୪
ସେବେଳେ କି ମେଡିକାଲ     ଆଜି ପରି ଥିଲା
ପେଟଚିରା ହସ୍ପିଟାଲ     କାଢିବାକୁ କୀଳା ?     ୩୮୫
ବାହାରେ ଯା ଅଂଶ ଥିଲା     କାଟିଲେ ବାଧରେ,
ମୁନିଆଁ ପଟ ରହିଲା     ପାର୍ମାନେଣ୍ଟ୍ ଉଦରେ ।     ୩୮୬
ରାଜା କଲେ କ୍ଷମାଯାଚ୍ଞା,     କ୍ଷମା କରି ତାଙ୍କୁ
ମାଣ୍ଡବ୍ୟ ଗଲେ ପ୍ରତିଜ୍ଞା     ପୂରା କରିବାକୁ ।     ୩୮୭
ତପ ବଳେ ଦିବ୍ୟ ଧାମେ     ଗଲେ ମହା ଯତୀ,
ଅଣିମାଣ୍ଡବ୍ୟର ନାମେ     ବ୍ୟାପିଲା ପ୍ରଶସ୍ତି ।     ୩୮୮
ଏକଦା ସେ ଗଲେ ଧର୍ମ-     ରାଜଙ୍କ ସଭାରେ,
ପଚାରିଲେ କହ କର୍ମ-     ଫଳର ବିଚାରେ,     ୩୮୯
କି ପାପ ମୁଁ କରିଥିଲି     ଧର୍ମ ଦେଲ କୀଳା,
ଏ କୀଳା ମିଛେ ଘେନିଲି,     ଏ କି ସିଲିସିଲା ?     ୩୯୦
ଧର୍ମ କହେ ବାଂଶ କୁଞ୍ଚେ     କଙ୍କିଟାଏ ଧରି,
ଉଡାଇନ ତାର ଲାଞ୍ଜେ     ଗୁଗୁଚିଆ ଭରି ?     ୩୯୧
ଯେଣୁ ଛୋଟ ପୁଣ୍ୟ ପାଇଁ     ବଡ ପୁଣ୍ୟ ଫଳ,
ଛୋଟ ପାପେ ଦଣ୍ଡ ନାହିଁ     କି ଲାଗି ପ୍ରବଳ ?     ୩୯୨
ମାଣ୍ଡବ୍ୟ କହନ୍ତି ପୁଣି,     କେବେର ସେ କଥା ?
ଧର୍ମ କହେ ଥିଲା ମୁନି     ତୁମ୍ଭ ଚପଳତା ।     ୩୯୩
ମାଣ୍ଡବ୍ୟ କ୍ରୋଧିତ ମୁହେଁ     କରିଲେ ଗର୍ଜନ,
ଜାଣିନ କି ଶିଶୁ ନୁହେଁ     ଦଣ୍ଡର ଭାଜନ ?     ୩୯୪
ବାର ଯାକେ ଅଜ୍ଞାନ ସେ,     ତାକୁ ଦେଲ ଶାସ୍ତି,
ଶାପ ଘେନ, ମର୍ତ୍ତ୍ୟ ଦେଶେ     ଶୂଦ୍ର ଜନ୍ମ ପ୍ରାପ୍ତି ।     ୩୯୫
ଆଜିଠୁ ନିୟମ ନୂଆ     କଲି ପ୍ରଣୟନ,
ଚଉଦ ଯା' ହେବ ଛୁଆ     ଅଜ୍ଞାନେ ଗଣନ ।     ୩୯୬

ତା ପରେ ଲାଗିବ ନାହିଁ    କିଛି ଅପରାଧ,
ସେ ନେଇ ଚଳିବ ନାହିଁ    ବାଦ ବିସମ୍ବାଦ ।    ୩୯୭
ଶାପ ପାଇ ଧର୍ମ ନେଲା    ଭୃତକ ଜନମ,
ଶୂଦ୍ରାଣୀ ଗରଭେ ହେଲା    ବିଦୁର ଅଧମ ।    ୩୯୮
ଧର୍ମଜ୍ଞାନେ ସେ ବିଦୁର    ଥିଲା ଧୁରନ୍ଧର
କରିବାକୁ ଶଙ୍କା ଦୂର    ସର୍ବଦା ତତ୍ପର ।    ୩୯୯
ବଢିଲେ ବଡ ଦି ଭାଇ    ରାଜଘରାନାରେ,
ଧର୍ମ ଦାସୀଘରେ ଥାଇ    ତାଙ୍କ ଅଗଣାରେ ।    ୪୦୦

ଲଲାଟେନ୍ଦୁ କବି    ୨୦୧୯୧୦୦୫୦୯୩୫

ସ୍ମାର୍ଟ୍ ମହାଭାରତ୍ — ୩୨/ଦ୍ୱାତ୍ରିଂଶ ବିସ୍ଫୋରଣ

ବଲାଳସେନର ଭାବନା

ଭାଳଇ ବଲାଳସେନ    ମେଘମାଳ ପରେ
ଖିନ୍ନ ଭିନ୍ନ ରଣାଙ୍ଗନ    ଛଳ ଏ ସମରେ ।    ୪୦୧
ନାହିଁ ଯୋଦ୍ଧା ନାହିଁ ଯୁଦ୍ଧ    କ୍ଷୁବ୍ଧ ଚରାଚର
ଶ୍ୱାସରୁଦ୍ଧ ସଦା ଲୁବ୍ଧ    ଭ୍ରାତୃତ୍ୱନିର୍ଝର ।    ୪୦୨
ନିଶ୍ଚିହ୍ନ କୌରବତକ,    ନିଶତ ପାଣ୍ଡବ;
ପୈଶାଚ୍ୟର ଅଭିଷେକ,    ପ୍ରହାସ୍ୟ ତାଣ୍ଡବ ।    ୪୦୩
ନିରପତ୍ୟନାରୀକୁଳଷ    ଅତାତ ସନ୍ତତି,
ଇଏ ହେବେ ପ୍ରଜାପାଳ    ସେନା ସେନାପତି !    ୪୦୪
ଆର୍ଯ୍ୟାବର୍ତ୍ତେ ଥିଲେ ଯୋଧ    ଅନ୍ତତଃ କୋଟିଏ,
କରିବାକୁ ଅଉଷଧ    ନ ଦିଶେ ଗୋଟିଏ ।    ୪୦୫
ଏକା ଚକ୍ର ସୁଦର୍ଶନ    ସରଜିଲା ଖେଳା,
ଆର୍ଯ୍ୟାବର୍ତ୍ତେ ଜଳମଗ୍ନ    ଭାରତଙ୍କ ଭେଳା ।    ୪୦୬
ଶ୍ରୀକୃଷ୍ଣଙ୍କ ମନେ ଥିଲା    ଯେଉଁ ଅଭିପ୍ରାୟ,
ଡାକି ସେ ହାଇୱେ କୀଳା    ନେଲେ ଅସହାୟ ।    ୪୦୭
କେହି କୃଷ୍ଣ ମାରପେଞ୍ଚ    ନ ପାଲିଲେ ବୁଝି,
ଅଯଥା ଖାଇଲେ କେଞ୍ଚ    ପରସ୍ପରେ ଯୁଝି ।    ୪୦୮
ମର୍ତ୍ତ୍ୟ କେବେ ଯିବ ଥମି    ଅତଞ୍ଚା ଏ କୀଳା:
ଜାତିଧର୍ମଭାଷାଭୂମି-    ଦର୍ପ ସିଲିସିଲା ?    ୪୦୯
ଭ୍ରାତୃରକ୍ତପ୍ରିୟ ଥିଲେ    କୃଷ୍ଣ ପରିବାର,
ଛିଡି ଫୁଲ୍ ଯୁଜ୍ କଲେ    କୃଷ୍ଣ ବିଶ୍ୱାଧାର ।    ୪୧୦
ଲଢୁଥିଲେ ବୀରବର    କୁକୁଡା ଲଢେଇ,
ଲାଭ ଏକା ମାଲିକର    ଜିତୁ ଯିଏ କେହି ।    ୪୧୧
କଳିକାଳେ ଇରାକରେ    ଆମେରିକା ପରି
ରବର୍ ଷ୍ଟାମ୍ପ୍ ପ୍ରଭୁ କରେ    ହସ୍ତିନା ନଗରୀ; ।    ୪୧୨
ଅଳ୍ପ କିଛି ଅଘଟଣେ    ରାଜା ଯୁଧିଷ୍ଠିର,
ଅତ୍ୟନ୍ତ ଦୁର୍ବଳପଣେ    ନ ରହିବ ଧୀର ।    ୪୧୩
କହୁଥିବ ହେ କେଶବ    ପ୍ରଭୁ ଭାବଗ୍ରାହୀ!
ଏଠି କିଏ ରଜା ହେବ?    କରିଦିଅ ତ୍ରାହି ।    ୪୧୪
କୃଷ୍ଣ କହିବେ ତୋ ପରି    ଯୋଗ୍ୟ ଆନ ନାହିଁ,
ରିମୋଟ୍ କଣ୍ଟ୍ରୋଲ୍ ଦୃଢଧରି    ମାରିବେ ନଚାଇ ।    ୪୧୫
ମାରପେଞ୍ଚ ନ ବୁଝିଲେ,    ସାଜିଲେ ଖେଳନା,
ଯୁଧିଷ୍ଠିର ଏବେ ଭାଳେ    ପ୍ରଭୁତ୍ୱ ଅଲଣା ।    ୪୧୬
ଚଉପାଶେ ରମଣୀଙ୍କି    କାନ୍ଦିବାର ଶୁଣି
ଜାଣି ପାରୁ ନାହାନ୍ତି କି    କରିବେ ଐଛୁଣି ।    ୪୧୭
ଯାହା ତ କଲେ ସମର,    ସବୁ ଘୋଡା ଡିମ,
ଜୀଅନ୍ତା ମଣିଷ ରକ୍ତ    ପିଇ ଗଲେ ଭୀମ ।    ୪୧୮
ଏହି ନରପଣ କିଏ    ଶିଖାଇଲା ତାତ?
କି ଲାଜେ କହିବି ମୁଁ ଏ    ହିଂସ୍ରକୁଳେ ଜାତ?    ୪୧୯

କୌରବ ଯା କଲେ କର୍ମ    ତୁମେ କଲ ତାହା,
ଯୁଦ୍ଧନୀତି କ୍ଷାତ୍ରଧର୍ମ    କରିଦେଲ ସ୍ୱାହା ।    ୪୨୦
ସ୍ବଜାତିର ରକ୍ତପାନ !!    କେବେ ବିଭ୍ରମରେ
କରେନା କେ ଦୈତ୍ୟଜନ    ମୋର ମାମୁଁଘରେ ॥    ୪୨୧

ଲଲାଟେନ୍ଦୁ କବି ୨୦୧୯୦୯୨୯୨୦୫୫

ଏବେ କିଛି ବିଶେଷ କଥନ

ସ୍ମାର୍ଟ୍ ମହାଭାରତ୍ —୩୩/ତ୍ରୟତ୍ରିଂଶ ବିସ୍ଫୋରଣ

(ବିଶେଷ କଥନ)
ବନସ୍ଥଳେ କୁନ୍ତୀଭାଳେ (ବା) ପାଣ୍ଡୁମାଦ୍ରୀଙ୍କ ସଡେନ ଡେଥ୍ ଉତ୍ତାରୁ

ମାଦ୍ରୀ ସତେ ଭୁଲି ଗଲା    ଏ ଶାସ୍ତ୍ର ବିବୃତି:
ଅଙ୍ଗ ଦେଖି ଅଣ୍ଡିରାଙ୍କ    ବିଗିଡେ ପ୍ରକୃତି ।
--
ପାଣ୍ଡୁ ପାଶେ ଗଲା ପଶି    ଝୀନ ବସ୍ତ୍ର ପିନ୍ଧି,
ପାଣ୍ଡୁକୁ ବିବଶ କଲା    କାମବାଣ ବିନ୍ଧି ।    ୪୨୨
କାମ ଉଦ୍ଦୀପନ ଫଳେ    ପାଣ୍ଡୁ ଗଲେ ମରି,
କୁନ୍ତୀ କହେ ଏ ଟୋକୀଟା    ନିହାତି କୋତରୀ ।    ୪୨୩
ଗାଳି ଶୁଣି ମାଦ୍ରୀ ରାଣୀ    ବିଷାଦ ବିକଳେ
ଦେଇ ଦେଲା ଆତ୍ମାହୂତି    ପାଣ୍ଡୁ ଚିତାନଳେ ।    ୪୨୪
ମାଦ୍ରୀ ବନିଗଲା ସତୀ    ତୁଟାଇ ଅଡୁଆ,
କୁନ୍ତି ପାଶେ ପାଳିବାକୁ    ଦୁଇ ଏକ୍ସ୍ଟ୍ରା ଛୁଆ ।    ୪୨୫
ହସିଲେ ଆଶ୍ୱସ୍ତ କୁନି    ସହଦେବ ନକ୍କୁ
ନୂଆ ମାତା ପାଇ ମର୍ତ୍ତ୍ୟେ    ପାଦ ରଖୁ ରଖୁ ।    ୪୨୬
ବଢିଲା କୁନ୍ତୀର ଏବେ    ଛୁଆଙ୍କ ଜଞ୍ଜାଳ,
କି ଭାବେ କରିବ ବଡ    ଭାବି ବହେ ଝାଳ ।    ୪୨୭
ପାଞ୍ଚଗୋଟି ଟିକିପୁଅ,    ଅତି ସାନ ସାନ,
ରଖିବେ ମଣିଷ ହେଲେ    ହସ୍ତିନାର ମାନ ।    ୪୨୮
କୁନିକୁନି ପାଞ୍ଚପୁଅ    ବାପ ଛେଉଣ୍ଡିଆ,
କି ଭାବେ ମଣିଷ କଲେ    ଚିହ୍ନିବ ଇଣ୍ଡିଆ ।    ୪୨୯
ଚିହ୍ନିବ ଜଗତ, ପୁଣି    ଭବିଷ୍ୟ ପୁରାଣ
ଝୁରିବ, ଭାବିଲେ ଲାଗେ    ଅତି ହଇରାଣ ।    ୪୩୦
ଜନମିଛି ଗାନ୍ଧାରୀଠୁ    ଘୋଡାମୁହାଁ ଛୁଆ,
ଶାନ୍ତ କଇଁଛ ମୋ ସୁତ    ସେ ପୂରା ଠେକୁଆ ।    ୪୩୧
ଧାଇଁ ଯାଇ ଛୁଇଁ ଦବ    ବାଉଁଶର ବୁଦା,
ଏ ଛୁଆ ପହଞ୍ଚିବେନି    ସେଠି ସଞ୍ଜ ସୁଦ୍ଧା?    ୪୩୨
ତା ବଳରେ ପାୱାର୍ ଫୁଲ    କୁନି ଦୁଃଶାସନ,
କହୁଛି ମୋ ନନା ପାଉ    ରାଜ ସିଂହାସନ ।    ୪୩୩
ସିଏ ହେବ ରଜା, ପାଶେ    ଥିବି ମୁଁ ଚାମୁଚା,
ଶାସିବି ପ୍ରଜାଙ୍କ  ବେକେ    ପକାଇ ଗାମୁଛା ।    ୪୩୪
ମନ୍ଦମତି ବେନି ପୁତ୍ର,    ଧୃତରାଷ୍ଟ୍ର ଅନ୍ଧ
ପୁତ୍ରମୋହେ ହତସ୍ୱନ୍ଦ    ନରପଣ ଗନ୍ଧ ।    ୪୩୫
ଏମିତିକା ଭାଗ୍ୟ ମୋର,    ଫଟା ମୋ କପାଳ,
ଛୁଆଙ୍କୁ ମୋ ରକ୍ଷା କର    ଗୋବିନ୍ଦ ଗୋପାଳ ।    ୪୩୬
ଲଲାଟେନ୍ଦୁ କବି    ୨୦୧୯୦୮୦୮୧୦୦୦

ସ୍ମାର୍ଟ୍ ମହାଭାରତ୍ — ୩୪/ଚତୁର୍ତ୍ତ୍ରିଂଶ ବିସ୍ଫୋରଣ
(ବିଶେଷ କଥନ)
ଦୁଃଖୀ ଧୃତରାଷ୍ଟ୍ରର ପୁଅ ପାଇଁ ପ୍ରୋବ୍ଲେମ୍:-

ନିସ୍ତବ୍ଧ ସେ ମଧ୍ୟରାତ୍ରେ ଭାଗ୍ୟକଥା ସ୍ମରି
ସନତ୍ସୁଜାତଙ୍କ ମୁଖୁ ଶୁଣି ଏହି ପରି

.

ଧୃତରାଷ୍ଟ୍ର ଭାଳେ ସବୁ	ଶୁଣିଲା ଉତ୍ତାରୁ,
କି ମିଳିବ ବେକାରିଆ	ଆତ୍ମସାକ୍ଷାତ୍କାରୁ?	୪୩୭
ଏହି ପାଠ ନୁହଁ ପକ୍ୱ	ରମ୍ଭା, ସ୍ଫୀତ ଚୁଡା,
ଆକୁ ବସି ଚୋବାଇବ	ଧୃଷ୍ଟରାଷ୍ଟ୍ର ବୁଢା?	୪୩୮
ଦାସୀଛୁଆ ବିଦୁରିଆ	ଦେଲା ସିନା ଡାକି,
ଏ ପାଠ ଶକ୍ତ ନଡିଆ,	ଥରେ କହିଲା କି?	୪୩୯
ଖାଇନି ଶୈଶବେ ଯିଏ	ପଇଡର ନାଳୀ,
ଖାଇବ ନଡିଆ ଟାଣ,	ଲହୁ ଲୁହ ଢାଳି?	୪୪୦
ପିଲାବେଳୁ ଧର୍ମଚର୍ଚ୍ଚା	କରିନାହିଁ ଯିଏ,
ତାକୁ ତ ପିଆନ୍ତ ଧର୍ମ	ଟିକିଏ ଟିକିଏ,	୪୪୧
ଗମାତ କରୁଛ କହି	ଗହନ ଏ କଥା,
ସଡେନ୍ ବଢାଇଲ ଟେନ୍ସନ୍,	ସମ୍ଭାଳୁନି ମଥା ।	୪୪୨
କୁଳାଙ୍ଗାର ଦୁର୍ଯ୍ୟୁ ମୋର	ବଡ ଉତ୍ପାତିଆ,
ତାହାଲାଗି ଭାଳିଭାଳି	ହେଲି ନିଷ୍କାତିଆ ।	୪୪୩
କପାଳକୁ ଯୁଟିଅଛି	ଲେଙ୍ଗୁଡ଼ୁ ଶକୁନି,
ତା ସହିତ ପଡି ଦୁର୍ଯ୍ୟୁ	ଇଜ୍ଜତ ରଖୁନି ।	୪୪୪
ଶ୍ୱଶୁରଘରିଆ ଜ୍ୱାଇଁ	ଭଗ୍ନୀ ଘର ଭାଇ,
ଘରଭାଙ୍ଗା ଫଳ ତହୁଁ,	କାତୁଆମି ନାହିଁ ।	୪୪୫
ଯାହା ହଉ ପୁଅଟା ତ	କି କରିବି ଆଉ?
ବୟସ ଗଡିଲେ ପୃଷ୍ଠେ	କରି ପାରେ ନାଉ ।	୪୪୬
ଝିଅ ନୁହଁ, ନ ପାରିବି	ତଣ୍ଟି ତାର କାଟି,
ଜଙ୍ଘରେ ହଗିଲେ ପୁଅ	ଦବା କଥା ଚାଟି ।	୪୪୭
ଲଲାଟେନ୍ଦୁ କବି	୨୦୧୯୦୮୧୩୧୧୩୭

ସ୍ମାର୍ଟ୍ ମହାଭାରତ୍ -୩୫/ପଞ୍ଚତ୍ରିଂଶ ବିସ୍ଫୋରଣ

(ବିଶେଷ କଥନ)
ଅଫେଣ୍ଡେଡ୍ ଦୁର୍ଯ୍ୟୋଧନ- କଥା ବା
ଦୁର୍ଯ୍ୟୋଧନର ଦୁଃଖ

ଦୁର୍ଯ୍ୟୋଧନ ଭାଳେ, ଏ କି	ପଷାଣୀ ଜନନୀ,
ପୁତ୍ରକୁ 'ବିଜୟୀ ଭବ'	କହି ପାରିବନି ?	୪୪୮
ଆଫ୍ ଗାନିସ୍ଥାନ ପାହାଡରୁ	ଧରିଥିଲେ ଭୀଷ୍ମ,
ସେଇଠି ବିତାଉଥିଲା	ବର୍ଷା ଶୀତ ଗ୍ରୀଷ୍ମ ।	୪୪୯
ଧରା ପଡି ବାହାହେଇ	ରାଜପରିବାରେ,
ଅନ୍ଧୁଣୀ ଏ ଆଖି ଥାଇ	କାହା କହିବାରେ ?	୪୫୦
ଶକୁନି ଏହାର ଭାଇ,	ମାଡେନା ତା ଛାଇ,
ଏ ବୁଝିବ ପୁତ୍ରମନ?	ମୋତେ ଲାଜ ନାହିଁ ।	୪୫୧
ଫିଙ୍ଗି ଦେଲା ରକ୍ତପିଣ୍ଡ,	ଏଡେ ଉଗ୍ରମନା,
ଇଏ କି ବୁଝିବ ପୁତ୍ର-	ପ୍ରସବ ବେଦନା ?	୪୫୨
ସେ ପିଣ୍ଡ ଛିଟିକି ଶହେ	ଫୁଲ ଗାମଲାରେ
ଶହେ ଭାଇ ଜନମିଛୁ	ମହା ହାମଲାରେ ।	୪୫୩
ଆମ ସାଥେ ଛଟପଟ	ଭଗିନୀ ଦୁଃଶୀଳା,
ଅବଳା ଝିଅକୁ ବି ଏ	ମାରି ଦେଲା କୀଳା ।	୪୫୪
ଆମର ବଇରୀ ସବୁ	ଯାର ଅତି ପ୍ରିୟ,
ଭୀଷ୍ମ ଦ୍ରୋଣ କୃପାଚାର୍ଯ୍ୟ	ସର୍ବେ ପୂଜନୀୟ ।	୪୫୫

ଅର୍ଜ୍ଜୁନବତ୍ସଳ କୃଷ୍ଣ ଏହାର ଦେବତା,
ୟା ହୃଦେ ଜାଗିବ କାହୁଁ ତନୟମମତା? ୪୫୬
କର୍ଣ୍ଣ ମୋର ପ୍ରିୟ ସଖା, ତାକୁ ପଚାରେନା,
ସୁତର ମହତ୍ତ୍ୱାକାଙ୍କ୍ଷା ଏ ବୁଝିବ ଛେନା ! ୪୫୭
ମାତୁଳ ଶକୁନି ମୋର ବାସ୍ତବ ହିତୈଷୀ,
ମୋ ଲାଗି ଖେଳନ୍ତି ପଶା ମାନସ ନିବେଶି । ୪୫୮
ଫଳିଲେ ଫଳିବ ଯାହା ଅଛି ମୋ କପାଳେ,
ବିଶ୍ୱାସ କରିବି ନାହିଁ ୟାକୁ କସ୍ମିନ୍ କାଳେ । ୪୫୯
ଲଲାଟେନ୍ଦୁ କବି ୨୦୧୯୦୮୦୭୧୩୦୦

(ମୂଳ ସ୍ମାର୍ଟ୍ ମହାଭାରତ୍ ରେ:-
"ଧୃତରାଷ୍ଟ୍ରପୁତ୍ର କହେ .......
ଏହାଠୁ ଉତ୍ତମ ଅତି ମାତୁଳ ଶକୁନି"ର)
ସ୍ମାର୍ଟ୍ ମହାଭାରତ୍-୩୬/ଷଟ୍ତ୍ରିଂଶ ବିସ୍ଫୋରଣ

## ଯମ-ସାବିତ୍ରୀ କଥା

ଆକାଶଦପ୍ତରେ ଯମ କିରାଣୀ ସଜ୍ଜନ;
ଅନୁଚର ଚିତ୍ରଗୁପ୍ତ, ବିଶ୍ବସ୍ତ ପିଅନ । ୪୬୦
ସାବିତ୍ରୀ ପୁଚ୍ଛନ୍ତି, ପତି ବଞ୍ଚି ଉଠିବେ ଟି?
ଯମ ଭାଷେ ବଞ୍ଚିବ ସେ, ଦେଲି ପା ଗେରେଣ୍ଟି ! ୪୬୧
ଯାଅ ଫେରି ନାହିଁ ଡେରି, ବସୁ ବସୁ ଉଠି
ତା ପାଟିରେ ଦବୁ ଧୀରେ ଅନ୍ନ ଏକ ମୁଠି । ୪୬୨
କ୍ଷୀରି ସାଥେ ରେଡି କରି ଦୁଇ ପଟ ରୁଟି
ପ୍ରଭାତ ପ୍ରହରେ ଦବୁ ମୁଖେ ତାର ଚୁଣ୍ଟି । ୪୬୩
ସାବିତ୍ରୀ କହନ୍ତି, ଧାଇଁ ଥକିଲାଣି ଦିହ,
ମଇଁଷି ପିଠିରେ ଟିକେ ବସିବାକୁ ଦିଅ । ୪୬୪
ଏ ଭିତରେ ରାତି କେତେ ଯାଇଅଛି ବଢି,
ମୋତେ ଛାଡି ଯାଉଅଛ ମଇଁଷିରେ ଚଢି ? ୪୬୫
ଟର୍କ୍ ନାହିଁ ମୋବ୍ ନାହିଁ ଫେରି ହେବ ଏକା?
ଚେତା ହେଲେ କେ କରିବ ପତିଙ୍କର ଦେଖା? ୪୬୬
ଯମ ଭାଷନ୍ତି, ତୋତେ ତ ପତି ଫେରାଇଲି,
ଜାଳିବାକୁ ଖୋଜୁଥାନ୍ତୁ ଚୁଲ୍ଲୀ ଦିଆସିଲି; ୪୬୭
ଯେତେ ଦବ ସେତେ ଲୋଭ ଯିବ ବଢି ବଢି,
ମାଗି ଚାଲ୍, ଯାଉଛି ମୁଁ ମଇଁଷିରେ ଚଢି । ୪୬୮
ଚିତ୍ରଗୁପ୍ତ ! କିଛି ଦୂର ଛାଡି ଦେଇ ଆସ,
ବାହୁଡିବ ବନ ସରି ଦିଶି ଗଲେ ଘାସ । ୪୬୯
ବଡବାବୁ ଅ◌ାଜ୍ଞା ଶୁଣି କହେ ଚିତ୍ରଗୁପ୍ତ,
ଏକା ଫେରି ପାରିବନି? ବଡ ଅଦଭୁତ ! ୪୭୦
ସ୍ୱାମୀ ପାଇଁ ବୋଲାଇବ ଯୁଗେଯୁଗେ ସତୀ,
ତା ଲାଗି ଫେରିବ ନାହିଁ ଏକା ତାର କତି ? ୪୭୧
ବାବୁଙ୍କ ବଚନେ ଘନ ରାତ୍ରି ବକ୍ଷ ଚିରି
ଛାଡି ଆସେ, ଜାଣି ମୋର ଛୋଟିଆ ଚାକିରୀ । ୪୭୨
ଚିପିଲେ ଚିଙ୍ଗୁଡି ମଥା ବାହାରିବ ଗୁହ,
ଗ୍ରେଡ୍-4 ପୋଷ୍ଟରେ ଖାଲି ଝରୁଥିବ ଲୁହ । ୪୭୩
ଖାତା ଧରି, ସଇ କରି ଏ ଥିବେ ସୁଖରେ,
ମୁଁ ଯିବି ଚିଟାଉ ବାଣ୍ଟି ବରଷା କାକରେ । ୪୭୪
କହିବେ ଇମ୍ପୋର୍ଟେଣ୍ଟ୍ ଚିଠି, କିଏ ଦେବ ଛୁଟି,
ଜାଣିନ କି ଚିଠି ବଣ୍ଟା, ଚପ୍ରାସୀ ଡିଉଟି ? ୪୭୫
ଏତେ ଦିନ ସୌଦା ଆଣି ଛୁଆଙ୍କୁ କାଖେଇ,
ଏବେ ଯାଇ ଏ ଟୋକୀକୁ ଆସିବି ବାଟେଇ । ୪୭୬
ସିସିଆର୍ ଏହାଙ୍କ ହାତେ, ମୁହଁ କେ ଖୋଲିବ,
ଛାଡି ଆସେ ଗଛ ପାଶେ, ଭାଗ୍ୟେ ଯାହା ଥିବ । ୪୭୭

ଥରେ କହିଲେନି ନିଅ 	ବାହନେ ବସାଇ,
ଯାନ ନାହିଁ, ତା ବଦଳେ 	ଏଲାଉନ୍ସ ବି ନାହିଁ, 	୪୭୮
ଏପରି ଅନେକ ଦୁଃଖ 	ଜୀବନର ଭାଳି
ଚିତ୍ରଗୁପ୍ତ କହେ, - ଚାଲ 	ଛାଡି ଆସେ ବାଳୀ ।" 	୪୭୯
ଲଲାଟେନ୍ଦୁ କବି ୨୦୧୯୧୧୨୦୧୨୫୫

ସ୍ମାର୍ଟ ମହାଭାରତ୍ -୩୭/ସପ୍ତତ୍ରିଂଶ ବିସ୍ଫୋରଣ

(ବିଶେଷ କଥନ)
ଭା ଭାଇ ଏକ୍ୟାନୈକ୍ୟ କଥା- କଥା ବା
ସମ୍ପର୍କ ବିଚିତ୍ରା

କାହା ପୁଅ ଭାଇ

ମାଉସୀପିଉସୀମାମୁଁ- 	କାକାଜେଠାପୁଅ,
ଭିଣେଇ-ଭାଉଜଭାଇ, 	କିଏ ଭାଇ ନୁହଁ ? 	୪୮୦

ବାପାମାଙ୍କ ସାଙ୍ଗପୁଅ- 	ଭାଇ, ଗ୍ରାମଭାଇ,
ଭାଇସାଙ୍ଗ, ଭଗ୍ନୀସାଙ୍ଗ, 	ତାଙ୍କସାଙ୍ଗ ଭାଇ । 	୪୮୧

ସହପାଠୀ, ଖେଳସାଥୀ, 	ମଦସାଥୀ ପୁଣି,
ସହକର୍ମୀ, ଡକାଡକି- 	ଭାଇ ଥିବ ଶୁଣି । 	୪୮୨

ମୁଁ ଏବେ କହୁଛି ଏକ 	ନୂଆଭାଇ କଥା,
ସବୁ ଜାଣି ଜାଣି ନାହିଁ, 	ଏ ତୁମ ଦୀନତା । 	୪୮୩

ଶ୍ରୀରାମଲକ୍ଷ୍ମଣ ପୁଣି 	ଭରତଶତ୍ରୁଘ୍ନ
ବାପାପୁଅଭାଇ କିନ୍ତୁ 	ସର୍ବେ ଏକମନ । 	୪୮୪

କର୍ଣ୍ଣ-ଯୁଧିଷ୍ଠିର-ଭୀମ- 	ଅର୍ଜୁନ ମିଶାଇ
ଚାରିଜଣ ପରସ୍ପର 	ମାଆପୁଅଭାଇ । 	୪୮୫

ମନଦେଇ ଶୁଣ ସବୁ 	ପାଠ ବୁଝି ହେବ
ମାଆପୁଅଭାଇ ତେଣେ 	ନକୁଳ-ସହଦେବ । 	୪୮୬

ଏ ଛ ଜଣ ପାଣ୍ଡୁଙ୍କର 	କିସ ହେବେ କୁହ?
ଏ ସଭିଏଁ ପାଣ୍ଡୁଙ୍କର 	ଭାର୍ଯ୍ୟାପୁଅ ପୁଅ । 	୪୮୭

ସେପରି ବିଦୁର, ପାଣ୍ଡୁ, 	ରଜା ଧୃତରାଷ୍ଟ୍ର
ବାପାପୁଅ ଭାଇ ବୋଲି 	କହେ ବୁଢା ମାଷ୍ଟ୍ର । 	୪୮୮

ଧୃତରାଷ୍ଟ୍ର ନେତ୍ରହୀନ 	ଆଖିକୁ ଦିଶେ ନା,
ଭୀମଠାରୁ ବଳବନ୍ତ, 	ଏକା ଗୋଟେ ସେନା । 	୪୮୯

ପାଣ୍ଡୁଟି ନିର୍ବଳ, କିଛି 	ପାରେ ନା ଉପାଡି,
ଅନ୍ଧ-ଭାଇରାଜ୍ୟ କିନ୍ତୁ 	ବସିଥିଲା ମାଡି । 	୪୯୦

ବିଦୁର ଶୂଦ୍ରଗର୍ଭଜ 	କାଳିଆ ତ୍ରିପଣ୍ଡ,
ଅଭିଶପ୍ତ ଧର୍ମଦେବ, 	ବୁଦ୍ଧିରେ ପ୍ରଚଣ୍ଡ । 	୪୯୧

ଯେଉଁ ପରି ଭାଇ ହୁଅ 	ମିଳିମିଶି ଚଳ,
ଫାଟ ହେଲେ ପାଠ ଶେଷ, 	ଏକତା ହିଁ ବଳ । 	୪୯୨

ଲଲାଟେନ୍ଦୁ କବି 	202206222222

ସୁପାର୍ ସ୍ମାର୍ଟ୍ ବା ବିସ୍ଫୋରକ ମହାଭାରତ୍  -୩୮/ଆଷ୍ଟାତ୍ରିଂଶ ବିସ୍ଫୋରଣ

## ସଞ୍ଜୟ ଡ୍ରାଇଭର

**ଧୃତରାଷ୍ଟ୍ର ଭାଳୁଅଛି          ସଞ୍ଜୁ ଡ୍ରାଇଭର**
**କହିଲାଣି ଲୋପ ହେବେ          ତନୟ ମୋହର । 493**

**କି ସାହସେ କହୁଅଛି          ହାରିବେ କୌରବ,**
**ଦେଇଥିବେ ଟଙ୍କା କିଛି  ତା ହାତେ ପାଣ୍ଡବ ।494**

**ପ୍ରାଣପଣେ ଭାଙ୍ଗୁଅଛି          ଆମ ମନୋବଳ**
**ସତେ କି ମୋ ପୁଅଗୁଡା          ଛେଳିଠୁ ଦୁର୍ବଳ ।495**

**ଶଲ୍ୟ ବୁଢା ଡ୍ରାଇଭର  କର୍ଣ୍ଣ ଟେକ୍  ଚଳାଏ**
**ସେ ବି ଶୁଣାଉଛି ବାଣୀ କର୍ଣ୍ଣକୁ ପୁଳାଏ । 496**

**ଡ୍ରାଇଭର ଜାତିଟାକୁ          ନ କର ଭରସା,**
**ଯୁଦ୍ଧ ଜିତେ, ନିକାଳିବି  ସଞ୍ଜୁକୁ ସହସା ।   497**

**ପ୍ରତି ପହିଲାରେ ମାଗି  ନେଉଛି ଦରମା**
**ଶତ୍ରୁ ଗୁଣ ଗାଇବାରେ          ଛିଲା ନାହିଁ ଜମା ।498**

**ଏହାକୁ ଗନ୍ଧେଇଲାଣି          ମୋ ପାଖେ ଚାକିରୀ**
**ଖାଇଲେ ଚାକିରୀ ଘୁରୁ ଥିବ ଘିରି ଘିରି । 499**

**ଆଉ ଗୋଟେ ଡ୍ରାଇଭର          ଅଧିରଥ ସୁତ**
**ତାର ଗୁଣ ଏହାଙ୍କଠୁ          ଉନ୍ନତ ବହୁତ ।  500**

**ଦେହ ସାରା ହେଉ ଯୁଦ୍ଧେ          ଖଣ୍ଡିଆ ଖାବରା,**
**ଦୁର୍ଯ୍ୟୁ ଲାଗି ପ୍ରାଣମୂର୍ଚ୍ଛା          ଲଢେ ସେ ବିଚରା ।501**

**ହେଇ ପାରେ ସିଏ ନୁହଁ ଡ୍ରାଇଭର ପିଲା,**
**ମାଠିଆରେ କୁଆଡୁ ତ  ଭାସି ଆସିଥିଲା ।502**

**ଲଳାଟେନ୍ଦୁ କବି          20230308**

.

ସୁପାର୍ ସ୍ମାର୍ଟ୍ ମହାଭାରତ୍        -୩୯/ଊନ ଚତ୍ୱାରିଂଶ ବିସ୍ଫୋରଣ

## ଭାଳେ ରାଜା ଯୁଧିଷ୍ଠିର

**ଛନ୍ଦ: ଅନୁଷ୍ଟୁପ୍ (ପଥ୍ୟାବକ୍ତ୍ର)**

ଭାଳେ ଯୁଧିଷ୍ଠିର ଶ୍ରେଷ୍ଠ          କି ଭାବେ ଯୁଦ୍ଧ ଚାଲିବ ।
ଅଭିଜ୍ଞ ଭୀଷ୍ମ ସଂବୃଦ୍ଧ          ଛୁଆଟା ପାର୍ଥ ମୋହର ॥503॥

ତୁସ୍‌ଡାସ୍ ଯୁଦ୍ଧେ ପଶେ ମାତ୍ର          ଯୁଦ୍ଧେ ନୁହଁ ମତି ସ୍ଥିର ।
ହାଣିବା କାଟିବାରେ ସେ          ଅତି ବେଶି ଧୁରନ୍ଧର ॥504॥

ତଥାପି ଲଢୁ କୌନ୍ତେୟ ଭରସାପାତ୍ର ଆମର ।
ପଛେ ତାର ଥିବା ସର୍ବେଜୟନିର୍ଘୋଷତତ୍ପର ॥505॥

ପେଞ୍ଚୁଆ କୃଷ୍ଣ ତା ସଙ୍ଗୀନିଶ୍ଚେ ପେଞ୍ଚ ବସାଇବେ ।
ପେଣ୍ଟ୍‌ସାର୍ଟ୍ ପିନ୍ଧାଇଛନ୍ତି ସେ ମୃତିବା ବାଟ କାଢିବେ ॥506॥

ନହେଲା ବାହୁସାମର୍ଥ୍ୟେଜିତିବା ପେଞ୍ଚପାଞ୍ଚରେ ।
ପାଖରେ ରହି କୃଷ୍ଣାଜ୍ଞା ପାଳିବା ପ୍ରତି ଅକ୍ଷରେ ॥507॥

**ବାଣୀପୁତ୍ର 20231126/11:11**

ବିଦ୍ୟା ବିହୁନେ ଏହି ଫଳ:
ଅଶୁଭ ଘଟିବ ପ୍ରବଳ

| | | |
|---|---|---|
| ଥାପ୍ପଡ ମାରି ବାରମ୍ବାର | ଫଟାଇ ଦେଲା ଗାଲ ତାର । | 1 |
| ଗୋଟିଏ ଖୁରା ପାଦେ ମାଡି | ଅନ୍ୟଟି ଦେଲା ମୋଡି ମାଡି । | 2 |
| ଦିଫାଳେ ତାକୁ ଦେଲା ବାଣ୍ଟି | ପିଞ୍ଜନ୍ତି ଯେହ୍ନେ ଦାନ୍ତକାଠି । | 3 |
| କୀଚକ ଥିଲା ରକ୍ତେ ଭିଜି | ଭୀମ ତାହାକୁ ଦେଲା ପିଞ୍ଜି । | 4 |
| କୃଷ୍ଣାକୁ ଯେଉଁ ଫଡିଆରେ | ନାଚେଇ ଥିଲା ପଡିଆରେ । | 5 |
| ଫାଡିଲା ଧରି ଥିଲା ରାଗ | ଛେଳି ଯେସନ ମାରେ ବାଘ । | 6 |
| ଭୀମର ପ୍ରଚଣ୍ଡ ପାହାର | ଯେ ଖାଏ ସେ କରେ ଜୁହାର । | 7 |
| ତା ଭାର୍ଯ୍ୟା ରାକ୍ଷସ-ଉପୃତ୍ତି, | ଶିଖିଛି ଦେବାକୁ ବିପତ୍ତି । | 8 |
| ଶିମ୍ପାଞ୍ଜି ସମ ଶକ୍ତିଧର | ଭୀମ ବିପକ୍ଷେ ତୁଚ୍ଛା ନର । | 9 |
| ସେ କାହୁଁ ଜାଣିବ ସୈରନ୍ଧ୍ରୀ | ପାଞ୍ଚ ପତିଙ୍କ ପ୍ରାଣେଶ୍ୱରୀ । | 10 |
| ଅଜ୍ଞାନ ବଶେ ନେଲା ନାମ, | ଶାସ୍ତ୍ରାଜ୍ଞା ଭାଙ୍ଗି ବୁଦ୍ଧି ବାମ । | 11 |
| ତେଣୁ ବାଳକେ ରଖି ଧ୍ୟାନ | ବଢାଅ ପଢି ପଢି ଜ୍ଞାନ । | 12 |

ବାଣୀପୁତ୍ର/20220726




## କ୍ୟୁଟ୍ କ୍ୟୁଟ୍ ଛୁଆ

==========

ଶାନ୍ତନୁର ଦୁଇ ସୁତ ଅଳ୍ପାୟୁଷେ ମଲେ

ବ୍ୟାସଙ୍କଠୁ ଦୁଇ ରାଣୀ ଛୁଆ ଜନ୍ମ କଲେ ।

ତାଙ୍କ ଭୟ ଯୋଗୁ ଦାସୀ ବ୍ୟାସଙ୍କୁ ତୋଷିଲା

ସେ ବି ଗୋଟେ ଛୁଆ ନିଜ ଗରଭେ ପୋଷିଲା ।

ତିନି ଜଣ ଜନ୍ମ କଲେ କିଉଟ୍ କିଉଟ୍ ଛୁଆ

ଅନ୍ଧ ବଡ ଧୃତରାଷ୍ଟ୍ର ପାଣ୍ଡୁ ନିର୍ବଳୁଆ ।

ଦାସୀଠୁ ବିଦୁର ଜ୍ଞାନୀମଣ୍ଡିଲା ଭୂଖଣ୍ଡ,

ଏସ.ସି. ମାତା ଗର୍ଭୁ ଜାତ କାଳିଆ ତ୍ରିପଣ୍ଡ ।

**ଲଲାଟେନ୍ଦୁ କବି 20230302**




ଛୋଟ ପରିବାର ।
କୁନ୍ତୀ ପାଞ୍ଚ ମାଦ୍ରୀ ଦୁଇ ଛୋଟ ପରିବାର;
ଗାନ୍ଧାରୀ ଶହେ ଜନ୍ମାଇ କରେ ହାହାକାର । ।୧
କୁନ୍ତୀ ଅନଟନ ସହେ ପାଣ୍ଡୁ ନାହିଁ ବୋଲି;
କାଖରେ ଗାନ୍ଧାରୀ ଶହେ ପାରେ ନାହିଁ ତୋଳି ।୨
ଶହେ ପାଞ୍ଚକୁ ଦୁଃଶୀଳା ଗଲେ ବିଦ୍ୟାଳୟ,
ଗୁରୁଙ୍କ ବୁଦ୍ଧି ହଜିଲା ଦେଖି ଶହେ ଛଅ । ।୩
ପଢା ପ୍ରକୋଷ୍ଠେ ନ ଥିଲା ଏତେଗୁଡା ସ୍ଥାନ,
ସେକ୍ସନ୍‌କୁ ତେପନ ପିଲା କଲେ ଅବଧାନ । ।୪
ଦୁର୍ଯ୍ୟୁର ସେକ୍ସନ୍‌ରେ ଧୁସା ଭୀମ ଅନ୍ୟଟିରେ,
ନିତି ମରାମରି ଘୁଷା ଖାଇବା ଛୁଟିରେ । ।୫
ପିଟା ମରା ଲାଗୁ ପଛେ କିଉଟ୍ କିଉଟ୍ ଛୁଆ
ଢିଷୁମ୍ ଢିଷୁମ୍ ଖେଳମଞ୍ଚେ, ଅତି ବେପରୁଆ । ।୬
L. Kabi 202307172147

## ଛୋଟ ଓ ବଡ ପରିବାର

କୁନ୍ତୀ ତିନି ମାଦ୍ରୀ ଦୁଇ ଛୋଟ ପରିବାର;
ଗାନ୍ଧାରୀ ଶହେ ଜନ୍ମାଇ କରେ ହାହାକାର । ୧

କୁନ୍ତୀ ଅନଟନ ସହେ ପାଣ୍ଡୁ ନାହିଁ ବୋଲି;
କାଖରେ ଗାନ୍ଧାରୀ ଶହେ ପାରେ ନାହିଁ ତୋଳି ।୨

ଶହେ ପାଞ୍ଚକୁ ଦୁଃଶୀଳା ଗଲେ ବିଦ୍ୟାଳୟ,
ଗୁରୁଙ୍କ ବୁଦ୍ଧି ହଜିଲା ଦେଖି ଶହେ ଛଅ । ୩

ପଢା ପ୍ରକୋଷ୍ଠେ ନ ଥିଲା ଏତେଗୁଡା ସ୍ଥାନ,
ସେକ୍ସନ୍‌କୁ ତେପନ ପିଲା କଲେ ଅବଧାନ । ୪

ଦୁର୍ଯ୍ୟୁର ସେକ୍ସନ୍‌ରେ ଧୁସା ଭୀମ ଅନ୍ୟଟିରେ,
ନିତି ମରାମରି ଘୁଷା ଖାଇବା ଛୁଟିରେ । ୫

ପିଟା ମରା ଲାଗୁ ଥିଲେ କିଉଟ୍ ବେବି-ଛୁଆ
ଢିଷୁମ୍ ଢିଷୁମ୍ ଖେଳୁ ଥିଲେ ଅତି ବେପରୁଆ । ୬

ଦ୍ରୋଣମାଷ୍ଟ୍ର ଅକଲ୍ ଗୁଡୁମ୍ ଦେଖି ଏ ଛୁଆଙ୍କୁ
ଛୁଟି କରେ ବେଳ ବୁଡୁଁ କହି ଥାଙ୍କୁ ଥାଙ୍କୁ । ୭

ଛୁଏ ଗାନ୍ତି ବୀରପଣ          ତୁହାଇ ତୁହାଇ
ସାରୁ ଥିଲେ ଗୁରୁଜନ          ଛୁଆଙ୍କୁ ଟିହାଇ ।     ୮

**L. Kabi  202307172147**

ସଞ୍ଜୟ ଡ୍ରାଇଭର

ଧୃତରାଷ୍ଟ୍ର ଭାଳୁଅଛି          ସଞ୍ଜୁ ଡ୍ରାଇଭର
କହିଲାଣି ଲୋପ ହେବେ     ତନୟ ମୋହର । 1

କି ସାହସେ କହୁଅଛି          ହାରିବେ କୌରବ,
ଦେଇଥିବେ ଟଙ୍କା କିଛି       ତା ହାତେ ପାଣ୍ଡବ ।2

ପ୍ରାଣପଣେ ଭାଙ୍ଗୁଅଛି          ଆମ ମନୋବଳ
ସତେ କି ମୋ ପୁଅଗୁଡା       ଛେଳିଠୁ ଦୁର୍ବଳ ।3

ଶଲ୍ୟ ବୁଢା ଡ୍ରାଇଭର          କର୍ଣ୍ଣ ଟେକ୍ ଚଳାଏ
ସେ ବି ଶୁଣାଉଛି ବାଣୀ        କର୍ଣ୍ଣକୁ ପୁଳାଏ । 4

ଡ୍ରାଇଭର ଜାତିଟାକୁ          ନ କର ଭରସା,
ଯୁଦ୍ଧ ଜିତେ, ନିକାଲିବି       ସଞ୍ଜୁକୁ ସହସା ।   5

ପ୍ରତି ପହିଲାରେ ମାଗି        ନେଉଛି ଦରମା
ଶତ୍ରୁ ଗୁଣ ଗାଇବାରେ          ଢିଲା ନାହିଁ ଜମା ।6

ଏହାକୁ ଗନ୍ଧେଇଲାଣି          ମୋ ପାଖେ ଚାକିରୀ
ଖାଇଲେ ଚାକିରୀ ଘୁରୁ        ଥିବ ଘିରି ଘିରି । 7

ଆଉ ଗୋଟେ ଡ୍ରାଇଭର      ଅଧିରଥ ସୁତ
ତାର ଗୁଣ ଏହାଙ୍କଠୁ          ଉନ୍ନତ ବହୁତ ।  8

ଦେହ ସାରା ହେଉ ଯୁଦ୍ଧେ     ଖଣ୍ଡିଆ ଖାବରା,
ଦୁର୍ଯ୍ୟୁ ଲାଗି ପ୍ରାଣମୂର୍ଚ୍ଛା        ଲଢେ ସେ ବିଚରା ।9

ହେଇ ପାରେ ସିଏ ନୁହଁ        ଡ୍ରାଇଭର ପିଲା,
ମାଠିଆରେ କୁଆଡୁ ତ         ଭାସି ଆସିଥିଲା ।10

ଲଲାଟେନ୍ଦୁ କବି     **20230308**

.

**ସୁପାର୍‌ସ୍ମାର୍ଟ୍ ମହାଭାରତ ଗ୍ରନ୍ଥ ଶଂସା**

**ଛନ୍ଦ: ଭୁଜଙ୍ଗପ୍ରୟାତ 12/586**

**ଛନ୍ଦୋଲକ୍ଷଣ: ଗଣ: ୟଗଣ× 4 ବର୍ଣ୍ଣ; 122× 4**

**12 2 / 122 / 122 / 122**

**ସୁପାର୍‌ସ୍ମାର୍ଟ୍ ମହାଭାରତ ଜ୍ଞାନଗଙ୍ଗା**

**ଯିଏ ତା ପଢେ ତା କରେ ମୁକ୍ତିଡଙ୍ଗା ।**

**କି ସଂସାର ବିଭ୍ରାନ୍ତି ତାର ସମକ୍ଷେ**

**ବହିର୍ଲୋକ ମାୟା ପଶେ ନାହିଁ ପାଖେ । 1**

**କରେ= ହାତରେ; ବହିର୍ଲୋକ= external world;**

**L. Kabi 202302111720**

ସୁପାର୍ ସ୍ମାର୍ଟ୍ ମହାଭାରତ

ଭାଗ -1

ଛନ୍ଦ: ଇନ୍ଦ୍ରବଜ୍ରା

ଛନ୍ଦୋଲକ୍ଷଣ: ତୌ ଜଗୌ ଗଃ

ବର୍ଣ୍ଣକ୍ରମ: 221/221/121+22)

==_/==_/_=_+==

---

ଜାବୋଡ଼ି ପାର୍ଥେ କହୁଛନ୍ତି କୃଷ୍ଣ
ମୋ ଛତ୍ର ଛାୟେ ହୁଅ ପୁଣ୍ୟପୂତ ।
କୌନ୍ତେୟ ଭାଷେ ଧରି ତାଙ୍କ ପାଦ
କାପଟ୍ୟ ଯୋଗେ କର ଜୈତ୍ରବନ୍ତ । 1

ଭାଷନ୍ତି କର୍ଣ୍ଣେ ପ୍ରଭୁ ସର୍ବଦର୍ଶୀ
ଯେ ଧର୍ମ ଯୋଦ୍ଧାର ଦିଏ ବୁଝାଇ -
ବୈରୀକୁ କେବେ ମଣ ନାହିଁ ହେୟ
ମୌକା ମିଳନ୍ତେ କୁଟି ଦେବୁ ଯାଇ । 2

ସେ ଦ୍ରୋଣ ବା ହେଇଥିଲେ ବି ଭୀଷ୍ମ
ରିକ୍ତାସ୍ତ୍ର ହେଲେ କୁଟିବା ବିଧେୟ,
ଶୋକାର୍ତ୍ତ ଯେବେ ଦିଶିବେ ବିପକ୍ଷ
ପର୍ଯ୍ୟସ୍ତ ଖଣ୍ଡେ କର ନିଃସହାୟ । 3

ମୋ ପାଦରେ ତୋ ମତି ଥାଉ ସକ୍ତ
ଶ୍ରଦ୍ଧା ବଳେ ତୋ ମନ ଥାଉ ଚେଙ୍ଗା ।
କେବେ ମୁହୂର୍ତ୍ତେ ବନି ଥା ଅଭକ୍ତ
ତୋ ଭାଗ୍ୟ ନିଶ୍ଚେ କରି ଦେବି ବେଙ୍ଗା । 4

L. Kabi VP 202212202332

ସୁପାର୍ ସ୍ମାର୍ଟ୍ ମହାଭାରତ
ଭାଗ -2 ଛନ୍ଦ: ଇନ୍ଦ୍ରବଜ୍ରା
ଛନ୍ଦଲକ୍ଷଣ: ତୌ ଜଗୌ ଗଃ
ବର୍ଣ୍ଣକ୍ରମ: 221/221/121+22)
==_/==_/_=_+==

---

ଦୁର୍ଯ୍ୟୋଧନ କ୍ଲେଶିତଚିତ୍ତ ଭାଷେ
ଅଜ୍ଞାତବାସାବଧି ଥାଉଁ ଦେଖ
ଆତ୍ମପ୍ରକାଶୀକୃତ ପାଣ୍ଡୁବଂଶେ
ଉତ୍ପାତ ଦୌର୍ଦମ୍ୟ କଲେଣି ମୂର୍ଖ । 1
ଶେଷୋକ୍ତ ବର୍ଷେ ମଳ ମାସ ଯେଣୁ
ଥାନ୍ତେ ବନେ ସେ ସବୁ ତେର ମାସ
ଭୀଷ୍ମଙ୍କ ଚିତ୍ତେ ପଶି ପକ୍ଷପାତ
ସେ ପାଞ୍ଚ କୀଳା ନଗରେ ପ୍ରବିଷ୍ଟ । 2
ମାତା ତୁ ଦେ ଆଶିଷ ମୋ ମଥାରେ
ହାଣେ ମୁଁ ସେ ପାଣ୍ଡବ ବଂଶଟାକୁ ।
ତୋ ଶକ୍ତି ଲାଭେ ବଢି ମୋର ଶୌର୍ଯ୍ୟ,
ନାଶେ ମୁଁ ସେ ପାଞ୍ଚଟି ବାତରାଙ୍କୁ । 3
ଗାନ୍ଧାରକନ୍ୟା ରଚି ବଜ୍ରନାଦ -
ଭାଷେ ପ୍ରଯୁଦ୍ଧେ ରହୁ ଧର୍ମ ଟେକ ।
ପାପୀଷ୍ଠ ସର୍ବେ ଗମି ନାଶ ଗର୍ଭେ
ଧର୍ମାବତାରେ ମିଳୁ ଅଗ୍ରଲେଖ । 4
ମା ବାକ୍ୟ ଦୁର୍ଯ୍ୟୋଧନକୁ ପ୍ରତୀତ
ହେଲା ସତେ ସେ ପଥରେ ପ୍ରଯୁକ୍ତା ।
କେବେ ବି ପୁତ୍ରେ ଶୁଭକାମନା ସେ
ଦେବାର ନୋ ଚାହ୍ଁ ମିଛ ମାଗି ହେବା । 5
ସାମାନ୍ୟ ଗେଜ୍‌ଗେଜ କଲେ ସହେ ନା
ରକ୍ତାକ୍ଷିରେ ସେ ଯମ ନା କି ଲାଗେ,
ଏ ଥାଉ ମୋ ମାମୁଁ କଥା ଶୁଣନ୍ତି
ଅତ୍ୟୁତ୍ତମ ପ୍ରୀତି ଭରା ସରାଗେ । 6

ସେ ମୋ ପଶା ଖେଳର ସୂତ୍ରଧାର,
ଜାଣନ୍ତି ଯୁଦ୍ଧେ ଜିତିବାର ତତ୍ତ୍ୱ ।
ତାହାଙ୍କ ପାଶେ ଅଛି ସର୍ବବିଦ୍ୟା
ମୋ ଶ୍ରେୟ ନିଶ୍ଚେ ଶକୁନିପ୍ରିୟତ୍ୱ । 7

L. Kabi VP 20221224

ସୁପାର୍ ସ୍ମାର୍ଟ୍ ମହାଭାରତ
ଭାଗ -3 ଛନ୍ଦ: ଇନ୍ଦ୍ରବଜ୍ରା
ଛନ୍ଦଲକ୍ଷଣ: ତୌ ଜଗୌ ଗଃ
ବର୍ଣ୍ଣକ୍ରମ: 221/221/121+22
==_/==_/_=_+==

---

ପାଣ୍ଡୁଙ୍କ ପୁତ୍ରେ କୁଟିରେ ପ୍ରବେଶି
ଭାଷନ୍ତି ଭିକ୍ଷା ମିଳି ନାହିଁ ବେଶି ।
ବୋଧନ୍ତି ମା ତଣ୍ଡୁଳ ନାହିଁ ମାତ୍ର
ଏ ଆମ ଲକ୍ଷା ଭୁବନେ ବିଚିତ୍ର । 1
କେମନ୍ତ କାର୍ଯ୍ୟେ କରିବା ନିଯୁକ୍ତା
ଆଜ୍ଞାକୁ ସେ ରେଡି ତୁ ଜାଣ ମାତା ।
କୁନ୍ତୀ କହେ ସେ ପୁଅ ! ତୁମ୍ଭ ବିତ୍ତ
ଆଭୋଗ ସର୍ବେ କର ସେ ପଦାର୍ଥ । 2
ପୁତ୍ରେ ମିଟିଂରେ କରୁଥାନ୍ତି ଚିନ୍ତା
ତାହାକୁ ସର୍ବେ କରିବାକୁ କାନ୍ତା ।
ପାଞ୍ଚାଳକନ୍ୟା ଶୁଣି ତା ବିଚାରେ
ଏହାଙ୍କୁ କେ ପାରିବ ମୂଢତାରେ । 3
କାନ୍ତା= wife;
ଏ ପାଞ୍ଚ ହେବେ ପତିଦେବ ମୋର
ନିର୍ବୁଦ୍ଧିଆ ପାଞ୍ଚଟି ପାଣ୍ଡୁପୁତ୍ର ।
ନିର୍ଲଜ୍ଜଶାଶୂ କରିଲା କି ଆଜ୍ଞା
ମେଣ୍ଢା ଜଣେ କେ ନ କଲା ଅବଜ୍ଞା । 4
କେ ହେବ ଭର୍ତ୍ତା ଉପକାନ୍ତ କେ ବା
ଏହାଙ୍କ ମଧ୍ୟେ କିସ ହେବ ରିସ୍ତା ।
ସନ୍ତାନ ଯେବେ ଜନମେ କିଏ ତା
ବପ୍ତା ଡକା ହେବ ବି ନାହିଁ ପତ୍ତା । 5
ଭର୍ତ୍ତା= ପତି; ଉପକାନ୍ତ= ଉପପତି;
ବପ୍ତା= ବାପା;

ଏ ଗୋବରାଏ ପୁଣି ଶକ୍ତି ଶାଳୀ
ଭାଷା ମିଳେନା କରିବାକୁ ଗାଳି ।
ମୋ ଭାଗ୍ୟଦୋଷେ ଭକୁଆଙ୍କ ହାତେ
ଏବେ ମୁଁ ବନ୍ଧା ଅଜଣା ବନସ୍ତେ ।   6

L. Kabi VP 20221225

ଭାଗ -4

ଛନ୍ଦ: ଇନ୍ଦ୍ରବଜ୍ରା      **ଛନ୍ଦ:**      **ଇନ୍ଦ୍ରବଜ୍ରା**

ଛନ୍ଦୋଲକ୍ଷଣ:      ତୌ ଜଗୌ ଗଃ

ବର୍ଣ୍ଣକ୍ରମ:      221/221/121+22

==_/==_/_=_+==

---

କ୍ରୋଧୀକୁ କେ ମୌନ କଲା ପଚାରି
ପାର୍ଥେକଲବ୍ୟେ ଧରିଲା ପ୍ରହାରି ।
ଦ୍ରୋଣଙ୍କ ପ୍ରଶ୍ନେ କହିଲା କିରାତ
ପ୍ରହ୍ୱାଣ ଘେନା କର ପ୍ରଣିପାତ୍ୟ ।  1

*କ୍ରୋଧୀ= କୁକୁର; କିରାତ= ଏକଲବ୍ୟ; ପ୍ରହ୍ୱାଣ= ପ୍ରଣାମ;*

ତୁମ୍ଭଙ୍କୁ ପୂଜା କରି ହେଲି ଷଣ୍ଢ
ଅଭ୍ରାନ୍ତ ନିକ୍ଷେପୁଛି ତୀରକାଣ୍ଡ ।
ହେ ପୂଜ୍ୟ ଏବେ ଦିଅ ବେଶି ଶିକ୍ଷା
ସୁଛାତ୍ର ହେବାର କରେ ପ୍ରତୀକ୍ଷା । 2

ତତ୍କାଳ ସେ ବ୍ରାହ୍ମଣ ରାଗି ଭାଷେ -
ଏତେ ମୁଁ ଶସ୍ତା ନୁହଁ ତୋ ସକାଶେ ।
ସ୍ୱତ୍ୱାଧିକାରସ୍ଥ ତୁ ପାଠ ଯାକ
କେମନ୍ତ ଘେନା କଲୁ ଏଷ୍ଟି ମୂର୍ଖ । 3

*ସ୍ୱତ୍ୱାଧିକାର= କପିରାଇଟ୍ (©); ଏଷ୍ଟି= S T.;*

ଔଦ୍ଧତ୍ୟ କେ ତୋ ସହି ନେବ ପାଜି
ତୋ ଶୁଳ୍କ ଆଦାୟ କରେ ମୁଁ ଆଜି ।
ଶାକାମ୍ଳ ଛାଟେ ପିଠି ତୋ ଫଟାଇ
ଦେବା ହିଁ ଶାସ୍ତ୍ରେ ଅଛି ତୋର ପାଇଁ । 4

*ଶାକାମ୍ଳ= ତେନ୍ତୁଳି;*

ମୋ ପ୍ରାପ୍ୟ ପୈଠେ ଗଲୁ ଫାଙ୍କି ମାରି
ସେ ହେତୁ ତୋତେ ଅଛି ରାଗି ଭାରି ।
ସ୍ୱର୍ଦ୍ଧା ବି ଏତେ ପୁଣି ମାଗୁ ବିଦ୍ୟା
ମୋ ପାଖ ଆ ଦେବି ମୁଁ ଏକ ବିଦ୍ଧା । 5

କୌନ୍ତେୟଗୋପ୍ତା ଭରିବାରୁ ଟଙ୍କା

ସେ ମୋର କୋଟିଂ ଲଭୁ ଥାଇ ବୋକା ।

ତୁ ବ୍ୟାଧ ଟୋକା କିଛି ଦେଉ ମୋତେ?

ଆରକ୍ଷଣେ ଆସ ତୁ ଏ ଯୁଗାନ୍ତେ ।6

*କୌନ୍ତେୟ= ଆର୍ଜୁନ; ଗୋପ୍ତା=*

*(ଗୋପ୍ତୃଶବ୍ଦରୁ) ଅଭିଭାବକ;*

ସୁପାର୍ ସ୍ମାର୍ଟ ମହାଭାରତ୍

ଭାଗ-5 **ଛନ୍ଦ:** **ଇନ୍ଦ୍ରବଜ୍ରା**

ଛନ୍ଦୋଲକ୍ଷଣ: ତୌ ଜଗୌ ଗଃ

ବର୍ଣ୍ଣକ୍ରମ: 221/221/121+22)

==_/==_/_=_+==

ଶ୍ରୀ ଏକଲବ୍ୟ ପ୍ରଣତାଙ୍ଗ ଭାଷେ

ଏ ବାକ୍ୟବାଣେ ମୁହିଁ ଅଗ୍ନି ଧାସେ ।

ଟଙ୍କାରୁ ଗୋଟେ ବୁଡିବାର ନାହିଁ

କେତେ ବି ଟଙ୍କା ନବ ମାଗ ସାଇଁ ॥ 1॥

ଆଗେ ତ ଶିକ୍ଷା ଦିଅ ଯୁଦ୍ଧ ବିଦ୍ୟା

ଭୂପେ ହରାଏ, କି ଅଭାବ ଟଙ୍କା ।

"ଏ ଯା," କହେ ଦ୍ରୋଣ "ସମସ୍ତ ବାକି,

ଆଗେ କିଏ ଧାର ଶୁଝାର ସାକ୍ଷୀ ॥" 2॥

ଇଚ୍ଛା ଥିଲେ ନିଶ୍ଚୟ ଶୋଧ ତୋଠି

ଉଦ୍ଧାର ଆଗେ ଶୁଝି ଦେ ତୁ ନେଷ୍ଟି ।

ଭାଷେ ଶିକାରୀ ଅଧୁନା ମୁଁ ଶୂନ୍ୟ

ପାଶେ ଥିବା ବସ୍ତୁ କି ମାଗ, ମାନ୍ୟ ॥ 3॥

ଏ ମୋ ପ୍ରତିଜ୍ଞା - ଅଧିକାର ମଧ୍ୟେ

ଯା ମାଗିଲେ ଦେବି ମୁଁ ତୁମ୍ଭ ପାଦେ ।

ମୌକା ମିଳନ୍ତେ ଗୁରୁ ମାଗି ଦେଲେ -

ଦେ ତୋର ବୃଦ୍ଧାଙ୍ଗୁଠି କାଟି ହେଲେ ॥ 4॥

ବାଣୀପୁତ୍ର 202301120222

ଭାଗ-6 ଛନ୍ଦ: ଇନ୍ଦ୍ରବଜ୍ରା

ଛନ୍ଦୋଲକ୍ଷଣ: ତୌ ଜଗୌ ଗଃ

ବର୍ଣ୍ଣକ୍ରମ: 221/221/121+22)

==_/==_/_=_+==

---

ସୂର୍ଯ୍ୟାସ୍ତ ଶେଷେ ଯୁଧି ଭାଇ ପୁଚ୍ଛେ
ରାଧେୟସଂହାର ଶୁଣାଅ ପାର୍ଥ ।
କୌନ୍ତେୟ ଭାଷେ ମରି ନାହିଁ ଟୋକା
ହତ୍ୟାକୁ ତା ପାର୍ଥ ନୁହେଁ ସମର୍ଥ ॥1॥

ଦୁଃଖେ ଯୁଧିଷ୍ଠ୍ରା କହିଲା କି ଧିକ୍ ଧିକ୍
ଗାଣ୍ଡୀବ ତୋ କାର୍ଯ୍ୟକୁ ନାହିଁ ଲାଗେ ।
କ୍ରୋଧେ କହେ ପାର୍ଥ, "କରେ ମୁଁ ଆ ଠିକ୍
ହାଣେ ମୁଁ ତୋତେ ଘଟୁ ଯା ବି ଭାଗ୍ୟେ ॥2॥

ଗୋଡାଇଲା ଭାଇକି କାଢି ଖଣ୍ଡା ,
ଆଗେ ଯୁଧିଷ୍ଠ୍ରା ପଛେ ସବ୍ୟସାଚୀ
ଯେମନ୍ତ ଶାର୍ଦ୍ଦୂଳକୁ ଦେଖି ମେଣ୍ଢା
ଦୌଡେ କି କାଳେ ଦବ ବାଘ ନାଛି ॥3॥

ଏମନ୍ତ ଭାବେ ବିତିଲା ଦି ଘଣ୍ଟା
ରିଷ୍ୟେ ଅବା ଖେଦୁଛି ପୁଣ୍ଡରୀକ ।
ଶ୍ରୀକୃଷ୍ଣ କାଳେ ପଶି ଆସି ସେଠା
ସମ୍ଭାଳି ନେଲେ ସ୍ଥିତିଟା ଅନେକ ॥4॥

ବାଣୀପୁତ୍ର 202302041010

---

ସୁପାର୍ ସ୍ମାର୍ଟ ମହାଭାରତ୍

ଭାଗ-7 ଛନ୍ଦ: ବସନ୍ତତିଳକା

ଲକ୍ଷଣ: ତଭଜା ଜଗୌ ଗଃ

ବର୍ଣ୍ଣକ୍ରମ: 221/211/121/121+22

==_/=_ _/_=_/_=_ + ==

---

କୈବର୍ତ୍ତଜା ରିଧମ ଯାଚନ ଦେଖି ଭାଳେ
ଏ ଶାନ୍ତନୁ ପ୍ରଣୟ ମତ୍ତ କି ରାଜ୍ୟ ପାଳେ ।
ଯା ପ୍ରାଣ ଯୌବନଯୁତା ତରୁଣୀର ପାଦେ
ସେ ତା ପ୍ରଜାଙ୍କ ହିତରେ କିସ କର୍ମ ସାଧେ ॥ ॥1

*ରିଧମ= ପ୍ରେମ; କୈବର୍ତ୍ତଜା= କେଉଟର ଝିଅ;*

ଭେଣ୍ଡା ସୁପୁତ୍ର ଅଛି ଭୀଷ୍ମ ସମାନ ମାତ୍ର

ଏ ମୂର୍ଖ ଧୀବରସୁତା ନିକଟେ କି ଆର୍ତ୍ତ ।
ଗଙ୍ଗା ସମା ସୁରଝଳା ଘର ଛାଡି ଦେଲା
ଏ ଭ୍ରଷ୍ଟ ସତ୍କୃତକୁ ମୋ କରି ଦେବ ପୋଲା ॥ ॥2

*ସୁରଝଳା= ଦେବବାଳା; ସତ୍କୃତ= ସମ୍ମାନ,* ***respect;***

ଏହାକୁ ଆଜ ମୁଁ ଚଖାଇବି ଏକ ମଜ୍ଜା
ଯା କ୍ଷାତ୍ର ବଂଶରୁ କରାଇ ନ ଦେବି ରାଜା ।
ଯା ବୋଲି ଶାନ୍ତନୁବୁଢାଟିକୁ ସର୍ତ୍ତ ଦେଲା
ଯା ଦେଖି ବୃଦ୍ଧମତି ଖଣ୍ଡ ବିଖଣ୍ଡ ହେଲା ॥ ॥3

ତା ସର୍ତ୍ତ: ଭୀଷ୍ମକୁ ଦିଆ ଯିବ ନାହିଁ ଦେଶ
ବାହା ନ ହେବ କି ସିଏ ନ ବଢାଉ ବଂଶ ।
ଏ ସର୍ତ୍ତରେ ଶିର ନୃପାଳର ଘୂରି ପାଁଇ୍ ପାଁଇ୍
ମୂର୍ଚ୍ଛା ଗଲା ନୃପତି, ବୁଦ୍ଧି ଗଲା ବିନାଶ ॥ ॥4

**(definition of vasantatiLakA:**
**उक्ता वसन्ततिलका तभजा जगौ गः ॥)**
**ssi sii isi isi + ss**

**L. Kabi 202302110909**

---

ସୁପାର୍ ସ୍ମାର୍ଟ ମହାଭାରତ୍

**ଭାଗ-8** **ଛନ୍ଦ: ମନ୍ଦାକ୍ରାନ୍ତା**

ଲକ୍ଷଣ: ମ ଭ ନ ତ ତ ଗୌ

ବର୍ଣ୍ଣକ୍ରମ: **sss sii iii ssi ssi ss**
**=== /= •• _ _ /_ _ _/= •• =_/==_ + ==**

ବର୍ଣ୍ଣ: **221/211/121/121+22**

---

ପୁଚ୍ଛେ ଦୁର୍ଯ୍ୟୋ- ଧନ ଗିରିଧରେ ଏକି ବୀଦ୍ୟା ଶୁଣାଅ
କିମ୍ପାଁ ତୁମ୍ଭେ ପରଘର କଣା ମଧରେ ସମ୍ପ୍ରବିଷ୍ଟ ।
ରାଜା ତୁମ୍ଭେ କି ପରି ଅଜଣା ରାଜ୍ୟ ଲୋକଙ୍କ ବିତ୍ତ,
କାହା ବୋପା ଧନ ନୁହଁ ଇଏ, ଖାଇବେ ବାଣ୍ଟି ପୁତ୍ରେ । 1

ଏକେ କୁନ୍ତୀ- ସୁତ ନିଜର ସେ ତୁମ୍ଭର କ୍ୱାଇଁ ମଧ
ଖଣ୍ଡେ ତୁମ୍ଭେ ନିଜର ଗୁଜୁରାଟ୍ ରାଜ୍ୟୁ ଦେବା ଯଥାର୍ଥ
କନ୍ୟାଦାନେ କିଛି ଚିଜ ବିନା ଯୌତୁକେ ଭଣ୍ଡି ଶେଷେ
ଭଗ୍ନୀ ଶାଶୂ ଘରୁ ଭିକମଗା ବ୍ୟାପିଲେ ଲୋକନିନ୍ଦା ।2

ତୁମ୍ଭେ ଯେତେ କପଟ କରିଲେ ପେଞ୍ଚରେ କେ ପଡେ ମୋ,
ମୋତେ ଲାଗେ ସୂତସୁତଟି ମୋ ମିତ୍ର ବିଶ୍ୱାସ୍ୟ ପୂରା ।
ଯେତେ ଗେଲ୍ହେ- ଇ କହୁଛ ତୁମେ ସେ ତ ସମ୍ପୂର୍ଣ୍ଣ ଏଲ୍ଟିଂ
ରାଜା ଦୁର୍ଯ୍ୟୋ ନ ଶୁଣିବ ଜମା ଟାଉଟର୍ ବୁଦ୍ଧି ଏବେ । 3

ଏତେ ସତ୍ୟ ଶିଖଉଛ ପରା, ବୁଦ୍ଧି କେବେ କି ଦେଲ-
ରେ ପଞ୍ଚାଟା ଚଳ ପୁଣି ବନେ ଅନ୍ୟ ଟାର୍ମ୍ ଏକ ବୋଲି?
ଶେଷେ ଯେବେ ମଳକ ପଡିଲା ମାସ ସେ ହେତୁ ତୁମ୍ଭ
ଜ୍ଞାନେ ନିଶ୍ଚେ ଅଛି ବରଷଟା ତେର ମାସେ ସରନ୍ତା । 4

ସୈତାନ୍ ସର୍ବେ ବନରୁ ଅଇଲେ ବାର ମାସେ କି ଭାବେ?
ମୂର୍ଖେ ଏଗେନ୍‌ବନକୁ ଚଳିବା ନ୍ୟାୟତଃ ଠିକ୍ କି ନାହିଁ?
ବାର୍ତ୍ତା ଅନ୍ତେ ପ୍ରଭୁ କହି ଗଲେ ପାରିବା କଷ୍ଟ ତୋତେ
ତୋ ବଂଶେ କେ ରହିବ କି ଯିବେ ଶୀଘ୍ର ହେବ ବ୍ୟବସ୍ଥା । 5

**(definition of mandAkrAntA: )**

sss sii iii ssi ssi ss
= = = / = • _ _ / _ _ _ / = • =_ / = = _ + = =

**L. Kabi 202302202818**

.

**କବିତା: ଅମ୍ବା ଭୀଷ୍ମକୁ ଯା କୁଟାଣ କୁଟିଳା**

**ତା ଥୋଡି ହେଲା ଅବାକ୍**

**ଛନ୍ଦ: ଭାଗ-୯ ଶାର୍ଦ୍ଦୂଳ ବିକ୍ରୀଡିତମ୍**

**ବର୍ଣ୍ଣ: ୨୨୨/୧୧୨/ ୧୨୧/ ୧୧୨/**

**•• ୨୨୧/ ୨୨୧+୨**

(ଯତି, ମାନେ ଗାୟନ-ବିରତି ୧୨, ୭ ରେ)

ଅମ୍ବାପ୍ରଶ୍ନ: "ବୁଢା! ବଡା କୁଳବୁଡା, କନ୍ୟାହତପ୍ ଭଦ୍ରତା?
ବାହା ସ୍ୱୀୟ ବିନା ଅନୁଢ଼ିତ ଛୁଆ- ଭ୍ରାତାଙ୍କୁ ଭାମା ଦବା ।
ସେ ଲାର୍ଭା ଦି ଗବାଙ୍କ ରାଜଗଦିରେ ହେ, ବେଠି ସଂରକ୍ଷିତା ।
ମାଥେ କ୍ଷୋଦ ଥିଲେ ବଡା କୁନିପିଲେ ତୋଷନ୍ତି କାମାଶ୍ରିତା?1

*ଅମ୍ବାପ୍ରଶ୍ନ= ଅମ୍ବାର ପ୍ରଶ୍ନ; ବାହା ସ୍ୱୀୟ ବିନା= ନିଜେ ବାହା ନ ହେଇ; ଅନୁଢ଼ିତ= ଅପ୍ରାପ୍ତବୟସ୍କ; ଭାମା= ନାରୀ, wife; ଛୁଆ-ଭ୍ରାତା= କୁନି ଭାଇ; ଲାର୍ଭା= ଡିମ୍ବରୁ ବିହାରିବା ଅବସ୍ଥା; କ୍ଷୋଦ= ମସଲା (ସିମେଣ୍ଟ+ ବାଲି); ରକ୍ଷିତା= ରକ୍ଷିତୃ (ରକ୍ଷାକର୍ତ୍ତା) ଶବ୍ଦର ପ୍ରଥମା ଏକବଚନ, ସ୍ତ୍ରୀ. ରକ୍ଷିତ୍ରୀ,;*

ମୋ ବପ୍ତା ରଚିଲେ ସ୍ୱୟଂବର ସଭା ତୁମ୍ଭେ ବିନା ଡାକରେ
ବେହ୍ୟା ତୁଲ୍ୟ ଯିବା ଫଳେ ତୁମର ବା ହେଲା ସମାଜ୍ଞା ପୁରେ?
କାଶୀରାଜ ଥିଲେ ତୁମ ଦ୍ୱିଷ କି ଯେ, ଘୋଷାରି ତାଙ୍କ ସ୍ୱଜା
ସେନାଶକ୍ତି ବଳେ ଛଳେ କଉଶଳେ ଉଡ୍ଡୀନ କେଉଁ ଧ୍ୱଜା? 2

*ବପ୍ତା= ବାପା; ସମାଜ୍ଞା= ଖ୍ୟାତି; ଦ୍ୱିଷ= ଶତ୍ରୁ; ସ୍ୱଜା= ଝିଅ; ଉଡ୍ଡୀନ= ଉଡିଲା;*

ତେଣେ ଶାଲ୍ୱରଜା ମନେ ସୁବଶିତା ମୁଁ ପ୍ରେମିନୀ କାମିତା
ତା ପ୍ରେମେ ମରିତା ଅନେକ ନିଶିତା ଦୁର୍ଦ୍ଦମ୍ୟ ଲୀଳାରତା ।
ସେ ଭାଷେ, ମୁଁ ପରା ଦ୍ୟୁଲୋକରୁ ଧରା ଦେବୀ ସଦା ବାଞ୍ଛିତା ।
ଏ ନୂଆ ପୁରୁଷେ ମୁଁ ଦେବି ମନସେ?" ଶ୍ରୀଭୀଷ୍ମ ଭାଷେ, "ତୁ ଯା ।" 3

*ବଶିତା= ପତ୍ନୀ, ପ୍ରେମିକା; ପ୍ରେମିନୀ= ପ୍ରେମୀର ସ୍ତ୍ରୀଲିଙ୍ଗ; ମରିତ= ମରୁଥିବା; ନିଶିତା= ରାତି; ଦ୍ୟୁଲୋକ= ସ୍ୱର୍ଗ; ମନସ୍= ମନ; "ତୁ ଯା"= ଯା ତେବେ, ବନ୍ଧନମୁକ୍ତ ହେ;*

**(definition of zArduLavikriDitaM:)**

sss iis isi iis ssi ssi + s
= = = / _ _ = / _ = _ / _ _= • = = _ / ==_ + =

**ବାଣୀପୁତ୍ର 202302241128**

**ଅଥବା ଭିନ୍ନ ଛନ୍ଦରେ**

**କବିତା: ଅମ୍ବା-ପ୍ରଶ୍ନରେ ଭୀଷ୍ମ ବାୟା**

**ଛନ୍ଦ: ମାଳିନୀ**

**ଭାଗ: ୯**

**ବର୍ଣ୍ଣ: 221/211/121/121+22**

(ଯତି, ମାନେ ଗାୟନ-ବିରତି ୮, ୭ ରେ)

ନ ଡରି କହୁଛି ଅମ୍ବା  ଭୀଷ୍ମ ମୋତେ ବୁଝାଅ
ଧରିଅଛ ତିନି କନ୍ୟା  ଭଦ୍ରତା ତୁମ୍ଭ ହେୟ ।
ନିଜ ପରିଣୟ ବନ୍ଧା  ଦେଇ କୈବର୍ତ୍ତ ପାଶେ
ଅପରିଣତ କନିଷ୍ଠେ  ବାନ୍ଧ କନ୍ୟା କି ଆଶେ ॥1॥

କହୁଛ ତ ଦୁଇ ଚିତ୍ରେ,ଛନ୍ତି ଏବେ ଶିଶୁପ୍ରେ
ଧରଉଛ ପୁଣି କନ୍ୟା ଆଣି ତାହାଙ୍କ ହାତେ ।
ଗୁରୁଜନ କହି ତୁମ୍ଭେ  ତାଙ୍କ ଦାୟିତ୍ୱ ନେଇ
ଭିଡୁଛ ତହିଁ କି ଆମେ ନାଚିବା ଥେଇ ଥେଇ ॥2॥

ପତିଚୟନ ସଭା ମୋ  ଡାକିଲେ ମୋର ତାତ
ଅଣୁକ ନ ଥିଲ ତୁମ୍ଭେ  ସେଠି ଆହୂତ, ଆପ୍ତ ।
କହ ତ ମଣିଲ କାଶୀ-  ରାଜ ବୈରୀ କି ଭାବେ,
ଧରିଲ ତିନିଟି କନ୍ୟା ସ୍ୱୀୟ ମୂର୍ଖସ୍ୱଭାବେ ॥3॥

ମନ ତ ପଡିଛି ବନ୍ଧା  ଶାଲ୍ୱ ରାଜାଠି ମୋର
ବିତିଛି ବହୁତ ତାହା  ସଙ୍ଗରେ କାଳରାତ୍ର ।
କିପରି ତୁମର ଚୋକାହେବ ମୋ କାନ୍ତ ଏବେ,
ଠୁକିବି ଦୁଇଟି ଠୋ ଠା  ତାଙ୍କ ଗାଲେ ସଗର୍ବେ ॥4॥

ଡରି କହୁଅଛି ଗଙ୍ଗା- ପୁତ୍ର ଯା ଯା ଜନିତ୍ରୀ
ଶୁଣି ତ ନ ଥିଲି ଏତେ  ଥାନ୍ତି ବୀରା ସୁନାରୀ ।
ମନରମଣିଷ ଶାଲ୍ୱେ  ଯାଇ ହେ ଶୀଘ୍ର ବାହା
ଯମ-କୁଟଣରୁ ମୋତେ  ଶୀଘ୍ର ଦେ ମୁକ୍ତି ରାହା ॥5॥

ବାଣୀପୁତ୍ର  **202310182020**

କବିତା: **କୃଷ୍ଣାର ଦୁଃଖ ବଢିଲା ଗମି ପାଣ୍ଡୁବଂଶେ**
ଛନ୍ଦ: **ବସନ୍ତତିଳକା**
ବର୍ଣ୍ଣ: **ବିଶେଷ କଥନ ଭାଗ ୩ ର**
ବର୍ଣ୍ଣ: **221/211/121/121+22**
(ଯତି, ମାନେ ଗାୟନ-ବିରତି ପାଦାନ୍ତେ)

=======

ଉପକ୍ରମ:

ମୋ ସ୍ମାଟ୍ ମହାସମର ଗଳ୍ପର ଏହି ଅଂଶେ

କୃଷ୍ଣାର ଚିତ୍ତପୁରତଃ ବୃଝ ପାଣ୍ଡୁବଂଶେ ।

କୃଷ୍ଣା ମନେ ପ୍ରଚୁର ସଂଶୟ ଦେଖ ଆଗେ

ପାଠ୍ୟେ ବସନ୍ତତିଳକା ତଭଜା ଜଗୌ ଗେ ॥00॥

=======

କୃଷ୍ଣାର ଚିନ୍ତନ କି ଅଦ୍ଭୁତ ଏହି ଶାଶୂ

ନିର୍ବୋଧ ବାକ୍ୟ କହିଲା ପଶି ଆସୁ ଆସୁ ।

ଭୀମାର୍ଜୁନାଗ୍ରଜ ଯୁଧି ସହଦେବ ନକ୍କୁ

ସର୍ବେ ହିଁ ଏକ ଉପରେ ବଳି ଆନ ଭକ୍କୁ ॥1॥

ନେତ୍ରେ ନ ଦେଖି ରଖିଲା ଜନନୀ କି ଉକ୍ତି

ମୌନତ୍ୱରେ ସହିଗଲେ ସବୁ ତାର ଯୁକ୍ତି ।

ଉଚ୍ଚାରିଲେନି ନୁହଁ ଏ ଘୁଗୁନୀ ପକୋଡା

ନାରୀ ଜଣେକୁ ନର ଏକଇ ମାତ୍ର ଲୋଡା ॥2॥

ଯା ହେଉ ସେ ତ ପଛରେ ସବୁ ଜାଣି ନେଲା,

ଆଦେଶ ଭିନ୍ନ ଭୁଲି ଘୁଙ୍ଗୁଡି ମାରି ଦେଲା ।

ହେବେନି କେ ଜଣକ ଦେବର ଅଗ୍ରପୂଜ୍ୟ

ଆଜ୍ଞା ସଭିଙ୍କ ଥିବ ମୋ ଉପରେ ପ୍ରଯୁଜ୍ୟ ॥3॥

ମୋ ଜନ୍ମଦାତୃଜନନୀ ଲଭିବେ କି ଲଜ୍ଜା

ବପ୍ତା ପଚାରିବ କଥା କରି କେଶସଜ୍ଜା ।

ପିତ୍ରାଳୟେ ସକଳ ସେବକ କର୍ମଚାରୀ

ଭ୍ରୁଭଙ୍ଗରେ କହୁଥିବେ କୁଳଟା ମୁ ନାରୀ ॥4॥

ଏତେ ପତିଙ୍କ ଗହଣେ ବୁଲିଲେ ଅରଣ୍ୟେ

ଟେରେଇ ଚାହିଁ ରହିବେ ବନସଂସ୍ଥମାନେ ।

ପ୍ରଚ୍ଛନ୍ନରେ କହୁଥିବେ ନୃପପୁତ୍ରପୁତ୍ରୀ

ମୂଢତ୍ୱବୃକ୍ଷଶିଖରେ ଫଳଭୋଗକାରୀ ॥5॥

ପ୍ଲାସ୍ ରେଞ୍ଚି ନାହିଁ ନିକଟେ ନ ଥିଲେ ବି ତେଲ

ତା ସ୍କୃପ୍ ଢିଲା ଧକଡ ଚାଲିଛି ସାଇକେଲ ।

ଏହାଙ୍କୁ ବୁଦ୍ଧି ଟିକିଏ ଦିଅ ବିଶ୍ୱନାଥ

ଧାରା ଭ୍ରମେ ଫୁଲବନେ ନ ଚଳାନ୍ତୁ କାତ ॥6॥

(definition of vasantatiLakA: )

ssi siii isi isi + ss

= = _ / = _ _ / _ = _ / _=_ + = =

L. Kabi 202329181111

କବିତା: କି ଭାବି କୃଷ୍ଣା ହଁ କଲା ପ୍ରବନ୍ଧନେ

ଛନ୍ଦ: ବଂଶସ୍ଥ

ବର୍ଣ୍ଣ: ବିଶେଷ କଥନ ଭାଗ ୩ ର

ବା

ଗୁଣନିଧି ଭାଇର ଶଙ୍କା ସମାଧାନ

ବର୍ଣ୍ଣ: **121/221/121/212**

(ଯତି, ମାନେ ଗାୟନ-ବିରତି ପାଦାନ୍ତେ)

**ପ୍ରଶ୍ନ:**

ଥିଲେ ବି କୁନ୍ତୀ ଅତି ଅଳ୍ପ ବୁଦ୍ଧିଆ
ହୁଅନ୍ତୁ ସେ ପାଞ୍ଚଟି ଭାଇ ଠାପୁଆ ।
କି ଭାବିକି ଦ୍ରୌପଦ ରାଜସନ୍ତତି
ବିଭାକୁ ଦେଲା ଭରି ତାର ସମ୍ମତି ॥00॥

**ଉତ୍ତର:**

ରହସ୍ୟ, ସେ ହେଇଥିଲା କି ସମ୍ମତା
ବିଭା ଥିଲା ତାର ଉପାୟଶୂନ୍ୟତା ।
ଥିଲା ତ ସେ ଭୀମଟି ଦୈତ୍ୟ ଯେସନେ
ରଖେ ହିଡିମ୍ବାକୁ ବି ଯେ ନିୟନ୍ତ୍ରଣେ ॥1॥

କି ବୈର କେ ସାଧିବ ଭୀମ ସାଙ୍ଗରେ
ନିରେଖି ତା ତେଜକୁ ବେଶି ରାଗରେ ।
କି ଲାଗି ପୁଚ୍ଛା କଲ ମୋଠି ଏକଥା
ପୁରାଣରେ ଯା ଅତି ଗୋପନୀୟତା ॥2॥

କିଏ ବୁଝାଏ ସବୁ ଧର୍ମଭାଷଣେ,
ବତାଇବେ କେ ଗୁରୁ ବେଶି ପୃଚ୍ଛନେ?
ବରଂ ସିଏ ରାଗି ବକନ୍ତି ପୁଚ୍ଛିଲେ -
ତୁ'ଟା ତ ବିଭ୍ରାଟ ବିରାଟ ପାଠନେ ॥3॥

ପଚାରିଲେ ସେ କହିବେ - କି ଦୁଷ୍ଟଟେ
ରଗାଇଲେ ଟାଙ୍ଗିବି ବାନ୍ଧି ମୋ ବଟେ ।
ଦିଏ ବିଶେଷେ ମୁ ବୁଝାଇ ବୋଲିକା
ତୁମେ ସଦା ଲାଗିଛ ଜାଣି ମୋ ପିଛା ॥4॥

ସମସ୍ତ ମୋ ଜ୍ଞାନ ମୁଁ ଖୋଲି ଲେଖିଲେ
ତୁମେ ଅଧିକା ଜାଣିବାକୁ ଆକୁଳେ ।
ପଚାରି ଏତାଦୃଶ ଦେଖ ପଣ୍ଡିତେ -
"ତୁ ଏକ ଧର୍ମଚ୍ୟୁତ" ବୋଲି ଭାଷିବେ ॥5॥

ବାଣୀପୁତ୍ର **202310182318**